# ଅଷଢ ।

ଶ୍ରୀ ଚନ୍ଦ୍ରଧର ଆଚାର୍ଯ୍ୟ ବି, ଏ;—ପ୍ରଣୀତ
ଏବଂ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

ଅରୁଣୋଦୟ ଯନ୍ତ୍ରାଳୟର ମେସିନ୍‌ଯନ୍ତ୍ରେ
ମୁଦ୍ରିତ ।

Printed by Nityananda Sahoo
at the Arunodaya Press
CUTTACK
19[illegible]5

ମୂଲ୍ୟ ୦।୦ । ଚାରିଅଣା ।

# ଉତ୍ସର୍ଗ ।

ନିଖିଳ ଗୁଣନିଧାନ ଉଦ୍ଦ୍ରକ୍ଷାତ୍ର-ପ୍ରବର ରାଜାବାହାଦୂର ଶ୍ରୀଯୁକ୍ତ ହିନ୍ଦୋଳାଧୀଶ୍ୱର ଶ୍ରୀ ନବକିଶୋରଚନ୍ଦ୍ର ସିଂହ ମର୍ଦ୍ଦ-ରାଜ ଜଗଦ୍ଦେବ ଏମ, ଆର, ଏ, ଏସ, ଏଫ, ଆର, ଏସ, ଏ, ମହୋଦୟଙ୍କ ... ...ଶ୍ରୀ କରକମଳେଷୁ ।

ଶ୍ରୀମନ୍ ମହାରାଜ !

ଆବାଲ୍ୟରୁ ଶ୍ରୀ ଯୁଷ୍ମଙ୍କ ଆନୁକୂଲ୍ୟରେ ଲାଳିତ ଏବଂ ଶିକ୍ଷିତ ହୋଇ ଅଧୁନା ମଧ୍ୟ ଶ୍ରୀଯୁଷ୍ମଙ୍କ ଆଶ୍ରାରେ ଜୀବନ-ଜୀବିକା ନିର୍ବାହ କରୁଅଛି, ଏହାର ପ୍ରତିଦାନ ମୋପରି ଦୀନ-ହୀନ ପକ୍ଷେ ନିତାନ୍ତ ଦୁର୍ଲ୍ଲଭ, ତେଣୁ ଦରିଦ୍ର ଶିକ୍ଷିତ ବ୍ରାହ୍ମଣ ପକ୍ଷେ ସୁଲଭ ଏହି "ଅକ୍ଷତ" ପୁଞ୍ଜ ଅନ୍ତରର ଶୁଭାଶିଷସହ ଅର୍ପଣ କଲି । ଜଗଦୀଶ୍ୱର ଶ୍ରୀଯୁଷ୍ମଙ୍କର ସର୍ବାଙ୍ଗୀନ ମଙ୍ଗଳ ସାଧନ କରନ୍ତୁ ଏହାହିଁ ଏକାନ୍ତ ପ୍ରାର୍ଥନା । ଇତି ।

ଶ୍ରୀ ଯୁଷ୍ମଙ୍କର<br>
ଏକାନ୍ତ ଶୁଭାନୁଧ୍ୟାୟୀ<br>
ଶ୍ରୀ ଚକ୍ରଧର ଆଚାର୍ଯ୍ୟ<br>
ନନ୍ଦପୁର ଶାସନ<br>
ହିନ୍ଦୋଳ<br>
୫-୧୨-୨୪

# ମନ୍ତବ୍ୟ ।

ଶ୍ରୀ ଶ୍ରୀ ରାଧା-ଗୋବିନ୍ଦ-ଦେବୌ ଜୟତଃ ।

ପରମ କଲ୍ୟାଣୀୟ ଶ୍ରୀମାନ୍ ବାବୁ ଗଙ୍ଗାଧର !

ତୁମ୍ଭର ବିରଚିତ କବିତାଗୁଡ଼ିକ ଆଗ୍ରହ ସହିତ ଗୋଟି ଗୋଟିକର ଆମୂଳ ପାଠ ପୂର୍ବକ ଅତୀବ ପ୍ରୀତ ହେଲି । ବର୍ଣ୍ଣିତ ବିଷୟଗୁଡ଼ିକ ସାରବାନ୍, ଭାବଗର୍ଭିକ, ଉପଦେଶବ୍ୟଞ୍ଜକ ଏବଂ ପ୍ରସାଦଗୁଣବିଶିଷ୍ଟ ଅଟେ । ବିଶେଷତଃ ସେମାନଙ୍କ ଯଥା-ସ୍ଥାନରେ ଗୋଟିଏ ଗୋଟିଏ ଦୈଶିକ ଶବ୍ଦ ପ୍ରୟୋଗ କରାଯାଇ-ଥିବାରୁ ତାହା ଅଧିକ ରମଣୀୟ ହୋଇଅଛି ।

ମୁଁ ଏହା ମୁକ୍ତ କଣ୍ଠରେ କହିପାରେ, ଏ କବିତାଗୁଡ଼ିକ ନିଃସନ୍ଦେହରେ ନିଜଗୁଣ ଦ୍ୱାରା ସର୍ବଶ୍ରେଣୀୟ. ପାଠକମାନଙ୍କର ଚିତ୍ତାକର୍ଷକ ହେବ । ଇତି ।

ତୁମ୍ଭର ଏକାନ୍ତ ଶୁଭାନୁଧ୍ୟାୟୀ
ଶ୍ରୀ ରାମଚନ୍ଦ୍ର ନନ୍ଦ ଭକ୍ତିବିନୋଦ ।
କୁଞ୍ଜବିହାରୀପୁର ଶାସନ
ଢେଙ୍କାନାଳ
୨୫-୧୦-୨୪

## ଅକ୍ଷତ

# ସୂଚିପତ୍ର ।

# ଅଷଟା

## କି ସୁଖର ଦିନ ପଡ଼େ ଆଜି ମନେ ।

କି ସୁଖର ଦିନ ପଡ଼େ ଆଜି ମନେ,
ସ୍ମରି ଯା ଲୋତକ ଝରଇ ନୟନେ ।
ଥିଲା ଦିନ ଯେବେ ଜନନୀ ଚୁମ୍ବନ,
ଲଭେ ଅନୁକ୍ଷଣ, ଆଜି ତା ସ୍ୱପନ ।
କିଏ ଦେଲା ମୋତେ ସେ ଚୁମ୍ବ ଛଡ଼ାଇ,
ଜଗତର ଦୁଃଖ ଚୁମ୍ବନେ ଜଡ଼ାଇ ।
ମାତାସ୍ନେହ କ୍ରୋଡ଼- ନୀଡ଼ ଦୋଳେ ଦୋଳି
ସ୍ୱଚ୍ଛନ୍ଦ ସଙ୍ଗୀତ ମନ ପ୍ରାଣ ଖୋଲି
ଗାଉଥିଲି କେତେ ଝଞ୍ଜାବାତ ସଙ୍ଗେ,
ଆଜି କାଲେ ମନ୍ଦ- ଅନଳ-ତରଙ୍ଗେ ।
ଭସ୍ମ ହେଲେ ଝିଙ୍କି ଜନନୀ-ଅଞ୍ଚଳ,
ଲୁଚଉଁ ଥିଲି ମୁଁ, ବଦନ-କମଳ ।

କାଳ ପଣତ ତା, ଥିଲା ଲୌହ ବର୍ମ,
ଅଚ୍ଛେଦ୍ୟ ଅଭେଦ୍ୟ ମୋ କୋମଳ ମର୍ମ ।
ଅଛି ସେ ଜନନୀ ଅଛି ସେ ଅଞ୍ଚଳ,
ଲୋଡ଼େ ନା ମୁଁ ତେଣୁ ଜୀବନ ସମ୍ବଳ ।
ଫିଙ୍ଗିଛି ସେ ସାଞ୍ଜୁ ଆପଣେ ଆପଣ,
ହୃଦୟେ ବାଜୁଛି ଶତ ପ୍ରହରଣ ।
ମଧୁପ-ଚୁମ୍ବିତ ସୁରଭି ସୁମନ,
ରଜନୀ-ରଞ୍ଜନ ବିମଳ କିରଣ ।
ଦେଖିଥିଲି ପୂର୍ବେ ଆଜ ମୁଁ ଦେଖୁଛି,
ଆକାଶ ପାତାଳ- ପ୍ରଭେଦ ମଣୁଛି ।
ବସନ୍ତେ ବିହଙ୍ଗ ମଧୁର କାକଳି
ତରଙ୍ଗିଣୀ-କଳ- ସଙ୍ଗୀତ-ଲହରୀ
ଶୁଣିଥିଲି ପୁଣି ଶୁଣୁଅଛି ଆଜ,
ମନତ ତେସନ ତହିଁ ନୁହେ ରାଜ ।
ଜ୍ୟୋତ୍ସ୍ନା, ସୁମନ ସମାନ ବିମଳ
ଚନ୍ଦନ-ଶୀତଳ ସୁରଭି ସୁନ୍ଦର;
ନଦୀ ଜଳ ସ୍ୱଚ୍ଛ, କଳ ବିମୋହନ,
କୂଜନ-ମଧୁର, ଫୁଲ୍ଲ ପକ୍ଷୀ ସଂ
ଥିଲା ଏ ଅନ୍ତସ୍ଥ, ବୁଝ୍‌ଥିଲି ତେଣୁ
ବାଇ ସର୍ବେ ପ୍ରାଣ- ବିମୋହନ ବେଣୁ,

ଡ଼ାକୁଥିଲେ ମୋତେ, ନିର୍ଜନେ ନୀରବେ,
ହୃଦ ନାଚୁଥିଲା ଆନନ୍ଦ-ବିଭବେ ।
ଆଜି ସେ ସରଳ ମଧୁର ଅନ୍ତର
ସମ୍ବାଦ ରଖିଛି ତୀବ୍ର ହଳାହଳ;
ଯେଣେ ଚାହେଁ ତେଣେ ସବୁ ଯାଏ ଜଳି
ବିଷ ବହ୍ନି ଉଠେ ହୃଦୟେ କନ୍ଦଳି ।



# କଥା-ଲଥା ।



କଥା ବୋଲେ-ଲଥା ସଖି କାହିଁକି ଗରବ ?
ମୋର ବିନା ନୁହେ ତୋର ଅସ୍ତିତ୍ୱ ସମ୍ଭବ ।
ଲଥା କହେ ମୋର ଯୋଗୁଁ ତୋହର ଗୌରବ
ମୁଁ ନ-ଥିଲେ ତୁ ଜଗତେ ପାନ୍ତୁ ପରାଭବ ।
କବି କହେ କଳଗୋଳେ ନାହିଁ ପ୍ରୟୋଜନ
ସଂଗୀ ଦୁହେଁ ସାଥି ହୋଇ ତୋଷ ଜନମନ ।



# ମୁରଳୀ ।



ବାଜେ ମନ୍ଦେ ମନ୍ଦେ    କି ମଧୁର ଛନ୍ଦେ
ବଂଶୀ ଗୋପାଳ-ମୁରଳୀ,
ଡାକେ ତୋଳି ସ୍ୱର    ନଗ୍ରଇ ଅନ୍ତର
ପାଷାଣ ଯାଏ ତରଳ ।
ଶୁଣି ସେହି ସ୍ୱର    ଗଛରେ ପତର
ହୃଦୟ'ନ ପାରେ ଧୈର,
ମନ୍ଦ ସମୀରଣେ    ଦୋଳି ଘନଘନେ
ଉଠେ ପ୍ରେମ-ଫୁଲ କଳି ।
କାନନେ ସୁମନ    ଶୁଣି ସେହି ସ୍ୱନ
ନାଚେ, ମନ ଉଚ୍ଛାଟନ;
ବୃନ୍ତଙ୍କରେ ବସି    ସୁଖେ ହସି ହସି
ବାସ କରେ ବିତରଣ ।
ଫୁଲୁଁ ଫୁଲେ ଅଳି    ଗୁଞ୍ଜରି ଗୁଞ୍ଜରି
ଚୁମ୍ବେ, ମନ ଆନନ୍ଦରେ,
ମଧୁପାନ ଛଳେ    ପ୍ରେମରସବଳେ
ପଢ଼ି ମୁରଳୀ-ଛନ୍ଦରେ ।

ଶୁଣି ବଂଶୀସ୍ୱନ ବନଦେବୀ ମନ
ଅନୁରାଗେ ଛନ ଛନ
ପୁଷ୍ପାଞ୍ଜଳି କରେ ପୂଜେ ହୃଦପୁରେ
ବଂଶୀଧାରୀ-ଶ୍ରୀଚରଣ ।
ବସି ଶୁକ ଶାରୀ ପଢ଼ନ୍ତି ଉଚ୍ଚାରି
ମୁରଲୀ-ମହିମା ଗୀତ,
ବିହଙ୍ଗ ପଙ୍କତ ପାନ୍ତି ଧରିଛନ୍ତି
ପ୍ରେମେ ଡୁବୁ ଡୁବୁ ଚିତ ।
କୁରଙ୍ଗ କୁରଙ୍ଗୀ କରି କେତେ ଭଙ୍ଗୀ
କୁଞ୍ଜେ କୁଞ୍ଜେ ବିହରନ୍ତି,
କହ କାହା ଆଶେ ହୃଦୟ ଉଲ୍ଲାସେ
ଗ୍ରୀବା ଟେକି ଗୃହିଁଛନ୍ତି ।
ତରଙ୍ଗିଣୀ ଧନୀ- ପ୍ରାଣେ ସେହି ଧ୍ୱନି
ସାତ୍ତ୍ୱିକ ଭାବ ସଞ୍ଚାରି
ପ୍ରେମରେ ମାତାଏ ହସାଏ କନ୍ଦାଏ
ତା ହୃଦ ନୁହେ ସମ୍ଭାଳି ।
ବେଗେ ଥରି ଥରି ଧୀରେ ଢଳି ଢଳି
ଗୃଲଇ ବାଧା ନ ମାନି
ସିନ୍ଧୁ ଭୁଜ ଦୋଳେ ଦୋଳି ପ୍ରେମଭୋଳେ
ପିଙ୍ଗେ ଲଜ୍ଜା ଭୟ ଗ୍ଲାନି ।

ପ୍ରଶାନ୍ତ ସାଗର ଅତ ଉଜ୍ଜ୍ୱଳ
ପ୍ରାଣସଖୀ ସଙ୍ଗେ ବସି,
କୁହେଁ ଗୀତରେ ବନେ ଅଥବା ଗଗନେ
କେଉଁ ଦିଗୁଁ ଶୁଭେ ବଂଶୀ ।

ଶୁଣି ସେ ମୁରଳୀ ଜ୍ୟୋତିଷ୍କ ମଣ୍ଡଳୀ
କେନ୍ଦ୍ରରେ ରବକୁ ରଖି
କେତେ ନାଚୁଛନ୍ତି ତାରା ପନ୍ତି ପନ୍ତି
ଚଉପାଶରେ ଦର୍ଶିକା ।

ସ୍ୱନ ତାନ ମାନେ ବିଦ୍ୟାଧରୀମାନେ
ଗାଆନ୍ତି ସୁଧା ସଙ୍ଗୀତ, "
ଶୁଣେ ତାର ଶ୍ରୁତି ଯାର ଉଭକୁଣ୍ଠି
ବିଶ୍ୱପ୍ରେମେ ଉଦ୍ଦୀପିତ ।



## ପାଠ-ଖାଠ ।



ଖାଲି ପାଠରେ କେବଳ ନ ଚଳେ ସଂସାର,
ପାଠ ସଙ୍ଗେ ସଙ୍ଗେ ଖାଦ୍ୟ ବହୁ ଦରକାର ।

ଶାଠ ପୁଣି ପାଠ ଛଡ଼ା ନୁହେ ପ୍ରୟୋଜନ
ପ୍ରତ୍ୟକ୍ଷ ପ୍ରମାଣ, ନୁହେ କପୋଳ ରଚନ ।
ପାଠ ଶାଠ ରଖେ ଯେହ୍ନ ଗଣ୍ଠି ମୁଠି କର,
ମୁରୁଖୁରୁ ଫସାଉଣ୍ଟି ଯାଏ ତାଇ ଚଳି ।



# ପ୍ରେମ ମିଳନ ।



ତରଙ୍ଗିଣୀ ଧାଏଁ ହସି    ଅମ୍ବୁନିଧି ସଦନେ,
ପଙ୍କଜିନୀ ଧୀରେ ଗ୍ରହିଁ    ବସିଥାଏ ତପନେ,
ଯୁଜନେ, କଇରବଣୀ    ମୁଦେ ଶଶିଲାଞ୍ଛନେ;
କେତେ ଆଶା ହୃଦେ ପୋଷା ସୁଖ ପ୍ରେମ ମିଳନେ । ୧ ।

ଦରବିକଶିତ କଳି    ଫୁଟେ ଅଳି ଚୁମ୍ବନେ,
ପ୍ରେମ-ଜୟ-ଗୀତ ଉଠେ    ସାରା ବିଶ୍ୱଭୁବନେ, ।
ଯୁଜନେ, ତାପସକୁଳ    ବନେ ନିଦିଧ୍ୟାସନେ
ଯୋଗେଶ ରତ ଧ୍ୟାନଶି    ଆତ୍ମାତ୍ମ ମିଳନେ । ୨ ।



# ଆତ୍ମ ଚିନ୍ତା ।

ସଭ୍ୟ ସମିତି ରଙ୍ଗେ ମୋର ଖ୍ୟାତିଗୀତ,
କେତେ ମୋ ଯଶକେତନ ଉଡ଼େ ନିତ ନିତ,
ପୁଣି ବଜାଇ ନାଗରା
ଜଗତ ମେଲାଇ ଦଏ ମୋ ନାମ ପସରା । ୧ ।

ଅନ୍ତର ଧ୍ୱନିକୁ ଥରେ ଡେରିଲେ ଶ୍ରବଣ
ଶୁଣେ ମୁଁ ଝମ୍ପକ ବାଜେ ଘୋରେ ଘନଘନ,
ଜନ ନାଗରାଁ ଦଦରା
ଭୁଲନା ଭୁଲନା ମୂଢ଼ ! ତୋ ଆତ୍ମ ଶୃଙ୍ଖଳା । ୨ ।



# ଭାବନା ।

ଭାବନା, ତୁ ଦଗାଦିଆ ଜାଣି ନ ଥିଲି,
ତୋର ଦଗାବାଜି କଥା ଏବେ ବୁଝିଲି ।
ବରାଙ୍ଗନା ବାରାଙ୍ଗନା ରୂପ-ମାଧୁରୀ
ଦେଖି, ପୁଣି ଶୁଣି ତାରି କଥା ଚାତୁରୀ

ଯୁବକ ଚପଳ ମନ-      ଭୃଙ୍ଗ ଯେସନେ
ଲୋଭେ ମଧୁପାନ ଭ୍ରମେ      ପ୍ରେମ-ସୁମନେ
ଫେରେ ଅଶାନ୍ତ ମାନସେ      ଭକ୍ଷି ଗରଳ,
ନିଃସାର ସୁସାର ଅଙ୍ଗ      ହୃଦ ଦୁର୍ବଳ;
ତୋ ମୋହିନୀ-ମୂର୍ତ୍ତି ଦେଖି ମନ ଚେତନ
ଲାଗିଗଲା ତୋ'ର ପ୍ରେମ-      ଫୁଲେ ବନ୍ଧନ,
ଲେଉଟି ଆସି ଦେଖୁଛି      ନୁହେ ମୋହନ
ଜ୍ୱଳନ ପରି ସେ ଛାତ      କରେ ଦହନ ।



## ଅନ୍ଧାରେ-ଆଲୋକ ।

ଉଆଁସ ରାତରେ ପଡ଼େ      ମେଘ ଟିପି ଟିପି,
ଚାଲୁଛି ବାଟୋଇ ବାଟ      ପାଦ ଚପି ଚପି ।
ଥରେ ଥରେ ମାରୁଅଛି      ବିଜୁଳି ମଝିରେ
ସରପାଟି ଚାଲିଯାଏ      ସେ ଛିପେ ଗହିରେ ।
ଚାଲି ଚାଲି ଏହପରି      ବାଟ ହୁଏ ଶେଷ,
ଘରପାଖ ଛୁଇଲେ ଆଉ      ଚିନ୍ତା କି ବିଶେଷ ?

ବାଟେଁ ଭୁଲିଲ, ବାଟ କେ ନେବ କଢ଼ାଇ
ମୋର ଭୁଆଁସ ସୂତରେ ସେ ଗଲା ଶିଖାଇ ।



# ତୁଠ ପଥର ।

ତୁଠ ନିରମଳ ପାଣି ଗଙ୍ଗାଜଳ
ମୁଗୁନି ପଥର ପଡ଼ିଛି
ମସ୍ତକ ପତାଇ ଲହରୀ ବାଳାର
କେତେ ପଦାଘାତ ସହୁଛି ।
ତାଳେ ତାଳେ ନାଚ ଢ଼ଳଢ଼ଳ ଗୀତ
ଗର୍ବେ ପୁଣି ପୁଣି ଧାଉଁଛି;
ମନେ ମନେ ହସି ଶିରରେ ପଥର
ଫେନ-ପଦ-ରେଣୁ ଘେନୁଛି ।
ଯିଏ ଆସେ ତାର ଚରଣ ଘର୍ଷଣ
ସହିବାକୁ ଜିଦି ପାତୁଛି
ପରଲାଗି ଯେଣୁ ? ଆତ୍ମସୁଖେ ବଳି
ଦେବାକୁ ଅଦ୍ୟାପି ଶିଖିଛି ।

ସହୁଥାଇ ଯେତେ    କ୍ଳେଶ ଅନ୍ତରତେ
ତେତେ ସ୍ନିଗ୍ଧ ସେତ ଦିଶୁଛି ।
ପାଖେଇ ଆସିଲେ    ତା ଅନ୍ତିମକାଳ
ତାର ଧୈର୍ଯ୍ୟ ସେ କି ଘୁଞ୍ଚୁଛି ?
ନିଦାଘେ ପ୍ରଚଣ୍ଡ-    ମାର୍ତ୍ତଣ୍ଡ କିରଣ
ଘର୍ମ୍ମ ଅଙ୍ଗ ତାର ଦହୁଛି
ଶ୍ରାବଣର ଧାର    ପଡ଼ି ନିରନ୍ତର
କେତେ କଷ୍ଟ ତାକୁ ଦେଉଛି ।
ମାଘ ମାସ ଶୀତ    ବଡ଼ ନିଦାରୁଣ
ଶିରରେ ଶିରରେ ଭେଦୁଛି,
କାହିଁକି ସେ ତଳେ    ଭ୍ରୂକ୍ଷେପ ନ କରି
ସହନ-ମନ୍ତ୍ର ଜପୁଛି ।



## କୃଷକ ।



ଶ୍ରାବଣ ମାସର    ବୃଷ୍ଟିଧାର
ପଡ଼ିବାରୁ କୃଷକ    ମାତେ ଭାର ।

ଶସ୍ୟେ ସୁଶ୍ୟାମଳା ଧରଣୀ ଧର
କୃଷକର ମନ- ନେତ୍ର ହର ।
ଝୁପୁ ଝୁପୁ ମେଘୁଁ ଜଳ ପଡ଼େ,
ଗଗନରୁ କିବା ମୁକ୍ତା ଝଡ଼େ !
ସମୀରଣ ବହେ ମନ୍ଦ ମନ୍ଦ
ସଙ୍ଗେ ଆଣି ବନ- ମଲ୍ଲିଗନ୍ଧ ।
ଶୀତେ କମ୍ପେ ଦେହ ଥର ଥର
ବାଜଇ ଦାନ୍ତର ଦଶନର ।
ହୁତାଶନ ଅତି ସୁଖକର
ସୁଖୀ ବସି ସେବେ ନିରନ୍ତର ।
କିନ୍ତୁ ଏ ଦୁର୍ଦ୍ଦିନେ କୃଷକର
ହୃଦେ ଝରେ ମୁଦ ଝର ଝର ।
ତାଳପତ୍ର ଝାମ୍ପି ଶିରପରେ
ବହି, ସୁଖେ କ୍ଷେତ୍ରେ କାର୍ଯ୍ୟ କରେ,
ମଳିନ ବସନ ତା ଶରୀରେ
ରହିଅଛି ଜଡ଼ି ଛନ୍ନ ନୀରେ,
ପାଦଠାରୁ ତାର ଶିରଯାଏ
ପଙ୍କ-ବିନ୍ଦୁ-ଛଳ ଶୋଭି ପାଏ ।
ଉଇଁଲାରୁ ରବି ଅସ୍ତଗତ
ହେବାଯାଏ କୃଷୀ- ବଳ ରତ

ଥାଏ କାମେ, କ୍ଳାନ୍ତ ନ ଜାଣଇ;
ପାଣିପରି ଦିନ ଯାଏ ବହି ।
ମଧୁର ସରଳ ତାର ପ୍ରାଣ
ନାହିଁ ଲେଶ ଗର୍ବ ଅଭିମାନ ।
ଧାନ କମଣ ତା ଏକା ଲକ୍ଷ୍ୟ
କୁଚିନ୍ତା ନ ଜାଣେ ତା ହୃଦୟ
ବିଳାସେ ବ୍ୟସନେ ନାହିଁ ମତି
କର୍ତ୍ତବ୍ୟ ସାଧନେ ମତି ଗତି ।
ଆହା ରେ ମୋ ପ୍ରିୟ କୃଷୀବଳ !
ସୁଖେ ଦୁଃଖେ ଧୀର ତୋ ଅନ୍ତର ।
ତୋ ଗୀତ ସରଳ ସୁଲଳିତ,
ସମୀର ହିଲ୍ଲୋଳେ ଉଚ୍ଛ୍ୱସିତ
ମୋ ହୃଦୟ-ବୀଣା ଛିଣ୍ଡା ତାରେ
ବାଜଇ ମଧୁରେ କେଡ଼େ ତାରେ ।
ବିପଞ୍ଚୀ ବିତାନେ ସୁଖକର
ଗାୟକ ଲଳିତ କଣ୍ଠସ୍ୱର
ପଡ଼ଅଛି ଶ୍ରୁତି- ପଥେ କେତେ,
କିନ୍ତୁ ନ ଲଭିଛି ସୁଖ ଏତେ ।
ମଧୁମାସ ହେଲେ ଚୂତ ଶାଖେ
ପିକ ବସି କୁହୁ କୁହୁ ଡାକେ;

ଶୁଣିଛି ସେ ସୁଧା- ମଧୁ ଜ୍ଞାନ,
ତୋ ଗୀତ ସଙ୍ଗେ କି ସେ ସମାନ ?
କାହିଁରେ ଶୀତଳ ନୁହେ ପ୍ରାଣ
ତୋ ଗାନକୁ ଡେର- ଥାଏ କାନ ।
ଭାବ ଅର୍ଥ ତହିଁ କଛି ନାହିଁ;
କେ ଜାଣି କାହିଁକି ହୁଏ ବାଇ
ଶୁଣିବାକୁ ତୋହ ମଧୁ ଗୀତ,
ତୋର ପ୍ରତ ଜାଗି- ଉଠେ ପ୍ରୀତ ।
ରେ ପ୍ରକୃ କୃଷକ ! ଦେଖି ଥରେ
ଶୁଣାଅ ତୋ ଗାନ ମଧୁ ସ୍ୱରେ,
ଶୁଣିବ ବାସନା ପୂର୍ଣ୍ଣ କର
ଗାଇ ସଙ୍ଗୀତ ତୋର ପର ।



## କାମନା ।

ଜଗତ ଭୁଲାଇ କେଡ଼େ ଛୁଦ୍ର ମୁହିଁ
କେଡ଼େ ବଡ଼ ମୋର କାମନା
କ୍ଷୁଦ୍ର ଠାରୁ କ୍ଷୁଦ୍ର ହୋଇଛି ନା ମୁହିଁ
ଖେଳାଡ଼ୁଛି ଗଗନ ଚନ୍ଦ୍ରମା ।

ଆକାଶ-କୁସୁମ-ଚନ୍ଦ୍ରକେ ମୋ ମନ
ଚାହୁଁଛି କେତେ କି ବିଫଳ ପ୍ରଯତ୍ନ
କି ସ୍ଥିର କଥାରେ ମୁଗ୍ଧ ହେଉଅଛ
ବୁଝାଇଲେ ମନ ଅମନା ।
ଦୈନ୍ୟ ସୁତା ଭିକ୍ଷା ଚିର ସହଚରୀ
କ୍ଷଣେ ଛାଡ଼େ ନା ମୋ ଅଗଣା
ମନେ ମନେ କରୁ ମନ ଅଟ୍ଟାଳିକା
ଗଢ଼ ପୂରାଏ ମୁଁ ବାସନା,
ରାଜଅଧିରାଜ ସିଂହାସନେ ବସି
କେତେ କଥା ଚନ୍ତେ ତହିଁ ମୁଁ ବିଳସି
ପଲକେ ପୁଣି ମୁଁ ତଳେ ପଡ଼େ ଖସି
କେତେ ସହୁଥାଇ ଲାଞ୍ଛନା ।
କି ମୋହିନୀ ଶକ୍ତି ଜାଣୁ ଲୋ କାମନା,
ଜଗତେ ନାହିଁ ତା ତୁଳନା
ଦୁଃଖ ତରୁମୂଳେ ଜଡ଼ାଇ ରଖିଲୁ
ଯେତେ ଛଡ଼ାଉଛି ଛାଡ଼ୁ ନା ।
ଦୁଃଖେ ଚିରଦିନ ରହୁ ଏ ଜୀବନ
ଯିବୁ କି ଭୋଳାନାଥ ହୃଦୟ-ରତନ !
ଜଣାଏ ଚରଣେ ତୋହ ବିନୁ ଆନ
କାମନା ମୋ ପ୍ରାଣେ ହିଅନା ।

# ମନ-ଦୁଃଖ ।

---

ମନ ଦୁଃଖ ମରେଁ ମନେ ମନେ,
କାନନ-ସୁମନ ଯେମନ୍ତେ ବନେ
ମୂଳେ ଗଡ଼େ ସଡ଼େ ଡେମ୍ଫୁ ଝଡ଼େ
ଧୂଳି ସଙ୍ଗେ ମିଶେ ପଡ଼ି ପଡ଼ି,
ମନ ଦୁଃଖ ମରେ ମନେ ମନେ,
ବଂଶ କାଠ ଯେମନ୍ତେ ବଂଶ ସନେ,
କାଟୁ କାଟୁ କାଠ ବଂଶ ଗଲା
ବଂଶ ସଙ୍ଗେ ସଙ୍ଗେ କାଠ ମଲା ।
ମନ ଦୁଃଖ ମରେ ମନେ ମନେ
ଯାର ଦୁଃଖ ଏକା ସେହି ଜାଣେ
କେ ନୁହେ କାହାର ଏ ଜଗତେ,
କା ଦୁଃଖ କେ ଭାବେ ହୃଦଗତେ ।
ମନ ଦୁଃଖ ମରେ ମନେ ମନେ
ଜାଣିବାକୁ ଅଛି ଏକା ଜଣେ ।
ଡାକଲେ ଆସଇ ସେ ବମୁଖ,
ନୋହି, ଦୁଃଖ ନେଇ ଦଏ ସୁଖ ।

—()ः*ः()—

## ଚକି ।

ଯାକୁ ବୋଲୁଅଛି ମୋର ମୋର,
ଧନେ ସେ ବୋଲେ ନା ତୋର ତୋର,
ଯହେଁ ବଳଥିଲି ସ୍ନେହ ଡ଼ୋର
ବାନ୍ଧିବାକୁ, ଭାଇ ! ପୋଥି ମୋର,
ଧନେ ଯାଇ ଦେଖେ ତା କତକ
ପୋକକଟା ପୋଥି ଟିକ ଟିକ;
ପୋଥି ବନ୍ଧା-ଆଶା ମଉଳିଲା,
ନୂଆ ଆଶା ପୁଣି ବଉଳିଲା-
ଏ ବକ୍ଷୁରେ ବାନ୍ଧ ମୋର ଚକି
ଉଡ଼ାଇବ ନଭେ ଯେସନ୍ତେ ପକ୍ଷୀ
ଉଡ଼ି ଉଡ଼ି ଲୁଚେ ଗଗନରେ
ଚକି ନଭଣିବ ଇଥରରେ ।



## ହସି—ଖୁସି ।

ହସି ହସି ଧନ ଯାଏ, ଧନେ ନୁହେ ଖୁସି
ହସିହସି ତୋଣ୍ଟ ଫାଟେ, ହୃଦ କାଟେ ମୂଷି ।

ହାସ ମୁଖ ଦେଖାଇ ମୁଁ    ପରକୁ ହସାଏଁ
ଏଣେ କଏ ପୁଣି ମୋର    ପରାଣ କନ୍ଦାଏ ।
ଧନ୍ୟ ରେ ସମାଜ ତୋତେ    ତୁ କମ୍ପା ହସାଉ
ଚହଟ ଚିକ୍କଣ ମୁଖ, ( ହୃଦ )    ଜଳେ ଦାଉ ଦାଉ ।

---

# ଫୁଲ ।

—o—

ଫୁଲଟିଏ ଫୁଟି    ବନ୍ଧୁରୂପବନେ
ମନ୍ଦେ ମନ୍ଦେ ନାଚ    ସନ୍ତ୍ର ସମୀରଣେ
ଲାବଣ୍ୟ-ଲହରୀ-    ଦୋଳାରେ ଖେଳୁଛି
ବସି ବୃନ୍ତପରେ    ଲଳିତେ ହସୁଛି,
ଦେଖେ କି ମଞ୍ଜୁଳ    ଗୋଧୂଳି ରାଗରେ
ଝର ଝର ସଦା    ମାଧୁରୀ କି ଝରେ ?
ଥର ଥର କମ୍ପେ    ଡାଳରେ ପତର
କୁସୁମଟି ତହିଁ    ପୁଣି ଟଳ ଟଳ ।
କି ମନୋହାରଣୀ    ଶିରୀ ଅପରୂପ
ଦଳେ ଦଳେ ଶୋହେ,    ମାନସ-ମଧୁପ

ଲାଗି ଯାଉ ତହିଁ ସେ ଶୋଭା-ସଦନ
ଛାଡ଼ିବାକୁ କେବେ ନ ବଳାଏ ମନ ।
ଦେଖିଲେ ନୟନ ନ ଲଭେ ତ୍ରପତ
ବଳୀ ହୋଇ ତହିଁ ବାନ୍ଧଇ ସଙ୍ଗତ
ଆସିବାକୁ ଫେର ନ କରେ ଯତନ,
ଲାବଣ୍ୟର ଆହା କିବା ପ୍ରଲୋଭନ !
ବହି ଆଣେ ବାସ- ସମୀର ମଳୟ,
ଆଘ୍ରାଣି ସୌରଭ ନାସିକା ଅଥୟ
ଆମୋଦ-ଆକୁଳେ ପଡ଼ଇ ଉଲୁସି;
ହୃଦ ପଦ୍ମକଳ ଉଠଇ ବିକଶି ।
ପରାଗେ ରଞ୍ଜିତ କୋମଳ କେଶର
ମରୁତ ପରଶେ ନାଚେ ଥର ଥର,
ମକରନ୍ଦ ପଡ଼େ ବିନ୍ଦୁ ବିନ୍ଦୁ ଝର
ଭ୍ରମର ଭ୍ରମଇ ପିଇଅନ୍ତ ଗୁଞ୍ଜର ।
ଘଟାଏ ଜଗତେ ବିଧି ନିବନ୍ଧନ
କି ବେଗରେ ପୁଣି କି ପରିବର୍ତ୍ତନ
ଆଜ ଯେ ସୁମନ, ଶୋଭାର ଆକର
ମଉଳ କାଲି ସେ ଧୂଳିରେ ଧୂସର ।
ଫୁଲର ସମୟ ହେଲାଣି ନିକଟ
ରହିବ ନାହିଁଟି ଏ ଶୋଭା-ଚହଟ

ନାଭଯିବ କ୍ଷଣେ ନସ୍ଥିତ ଆଦର
ତପନ ଉଦୟେ କୁହେଳିକା ସର ।
ମାନବ ! କାହିଁକି ବୃଥା ଅହମ୍ମିକେ
ମାତିଅଛୁ ଏହି ମର ଜଗତରେ ?
ଝଞ୍ଜାବାତେ ଯେବେ ତୋ ଲାବଣ୍ୟତନୁ-
ଲତା ଝାଉଁଳିବ ପାସୋରିଲୁ ମନୁଁ !
ଯୌବନ ସୁମନ ବୃନ୍ତୁ ପଡ଼ି ଝଡ଼ି
ଧୂଳି ସଙ୍ଗେ ମିଶି ଯିବ ପଚି ସଡ଼ି ;
ରହିଥିବ ତୋର ସୁନାମ ସୌରଭ;
ବୁଝି କାର୍ଯ୍ୟ କର ଛାଡ଼ ତୋ ଗରବ ।



# ନଦୀ ।

ଲହରୀମାଳିନୀ ଦୂର ପ୍ରବାହିନୀ
ନଦୀ ଗିରି ପଦୁଁ ଝରି
ଧାଏଁ ତରତର ନାଚି ଢଳଢଳ
ସାଗର ପ୍ରେମ ସୁମରି ।
ଯେତେ ଆଗେ ଯାଏ ତେତେ ବଢ଼ୁଥାଏ
ଦ୍ୱିଗୁଣ ତାର ସାହସ

ଲଙ୍ଘେ ଅବିଶ୍ରମ କଠିନ ପାଷାଣ
ବନ୍ଧେ ହୋଇ ହସ ହସ ।
ସାଗର ତା ଧ୍ୟାନ, ସାଗର ତା ପ୍ରାଣ
ସାଗର ଜୀବନ ଧନ ;
ସାଗର ସୁଖ୍ୟାତି ରଟେ ଦିବାରାତ୍ର
କରି କଳକଳ ସ୍ୱନ ।
ନିକଟ ଯେତେ ସେ ହୁଏ ଅବଶେଷେ
ତେତେ ତା ହୃଦ ବିସ୍ତାର
ବଢ଼େ, ସୁମୋହନ- ମୂର୍ତ୍ତି ଅନୁକ୍ଷଣ
ଧରେ ଗମ୍ଭୀର ଉଦାର ।
ପାରବାର ସଙ୍ଗେ ମିଶି ତା ତରଙ୍ଗେ
ଭୁଞ୍ଜେ ଚିର ସୁଖ ଶାନ୍ତି
କଳନ୍ନାଦିନୀ ତରଙ୍ଗିଣୀ ଧନୀ
ପ୍ରେମାଳାପେ ସଦା ମାତି ।
ସାଧୁର ଜୀବନ- ସ୍ରୋତତ ଏସନ
ସରଳ ପ୍ରେମ- କଲ୍ଲୋଳ
ପ୍ରେମେ ବଳୀୟାର ହୋଇ ଅନିବାର
ଲୋଡ଼େ କୃପାସିନ୍ଧୁ କୋଳ ।



# ନାଉରୀ ଭାଇ ।

ଝୁପୁଝୁପୁ ପଡ଼େ ବରଷାର ବାର
ସୁରୁସୁରୁ ବହେ ବାଆ ;
କାହିଁ ଯାଉଛୁରେ ନାଉରୀଅ ଭାଇ !
ତରତର ବାହି ନାଆ ?
କୁଳକୂଳ ଖାଇ ବଢ଼ି ଅଛି ନଈ
ଦେଖିଲେ ମାଡ଼ଇ ଡର,
ଦୁରୁଦୁରୁ କମ୍ପେ ମୋହର ଅନ୍ତର,
ତୋ ଛାତି ଏଡ଼େ ପଥର !
ରଙ୍ଗେ ଖେଳ ଖେଳ ଦୋହଲ ଦୌହଲ
ଧାଇଁ ଆସୁଛି ଲହରୀ
ବିସ୍ତାର ବଦନ ଉଗାରଣ ଫେନ
ଗ୍ରାସିବାକୁ ପରି ତରି !
ନାହିଁ ତିଳେ ଭୀତି କ ସାହସଭରେ
ଗାଉଛୁ ନାଉରୀ ଭାଇ !
ମନଆନନ୍ଦରେ ସୁଲଳିତ ସ୍ୱରେ
ମଧୁର ସଙ୍ଗୀତ ଗାଇ ।
ସଂସାର-ସରିତ ବହୁଛି ଆଗରେ
ସଦା କୁଳକୂଳ ଖାଇ,

ତୋପର ଧ୍ୱନେ କି  ପାରିହେବ ଦମ୍ଭେ
ବନ୍ଧୁନାମ ସୁଖେ ଗାଇ ?



## ଶାନ୍ତି ।

ଖୋଜିଲିଣି କେତେ  କେତେ ବା ଖୋଜିବ ?
ଦେହେ ନାହିଁ ଆଉ ବଳ ;
ବୁଲି ବୁଲି ପାଦୁଁ  ପାଣି ମୋ ମଲାଣି
ଶୁଖିଲାଣି ହୃଦ-ସର ।
ଦେଖିଲି ସୁମେରୁ  ପୁଣି ତ କୁମେରୁ
ପଶିଲି ଜଳଧିତଳେ,
ଦେଖିଲି ଗଗନେ,  ଗମିଲି ନନ୍ଦନେ
କାହିଁ ନ ଦେଖିଲି ଥରେ ।
ଭ୍ରମିଲେ କି ହେବ,  କିଏ କାହୁଁ ଦେବ ?
ଅଛି ପାଖେ ମୋ ରତନ,
ଗଳାମାଳ ଗଳେ  ପଡ଼ିନାହିଁ ତଳେ
ଖୋଜେ କିପାଁ ତ୍ରିଭୁବନ ?



## ଧନ-ମାନ ।

ମାନ ଯାଉ ବୋଲେ ଲୋଭୀ    ରହୁ ମୋର ଧନ,
କହେ ମାନୀ ଯାଉ ପଛେ    ମୋ ଧନ ଜୀବନ
ଥାଉ ମାନ, ଗଲେ ସେତ    ଆଉ ନ ଫେରିବ,
ଧନ ଗଲେ ପ୍ରାଣ ଥିଲେ    ଅନେକ ମିଳିବ;
ଲୋଭୀ ଭଣେ ସମ୍ମାମାନେ    କିସ ପ୍ରୟୋଜନ ?
ଧନ ଗଲେ ଗଲା ସିନା    ଜୀବନ କାରଣ ।



## ଦିଅ-ନିଅ ।

ଦିଅ ନିଅ ଲାଗିଅଛି    ନିଖିଳ ସଂସାରେ,
ଦେଇ ନେବା କଥା ଭଲ    ମହତ ବେଭାରେ ।
ନ ଦେଇ ନେବା ଲୋଡ଼ିଲେ    କାହୁଁ ବା ମିଳିବ ?
ମହତ ଜନକୁ ସେ କି    ସୁନ୍ଦର ଦିଶିବ?
"ଦିଅ, ଭାଇ ! ନିଅ" ଏହା    ସୁଜନ-ସୁଗୀତ
ନ ବୁଝି କାଟିବା ବାଞ୍ଛା    ଅସଙ୍ଗତ ନୀତ ।



# ଉଷାଗମେ କୃଷକ ।

ଉଷା କାଳେ ପ୍ରାଚୀ କୋଳେ ତରୁଣ ତପନ
ଖେଳଇ ଆନନ୍ଦେ, ମୁଖେ ଅରୁଣ କରଣ ।
ଲଭି ତା ଶୀତଳ କର ଲଭି ତା ମାଧୁର୍ଯ୍ୟ
ନବ ଜାଗରଣେ ଫୁଲେ ହୃଦୟ ସବୁରି ।
ନାହିଁ ସେହି ଅବସାଦ ନାହିଁ ସେ ଜଡ଼ତା
ଅନ୍ତର-ବାଇଜେ ବାଜେ ସଖୀ ପ୍ରଫୁଲ୍ଲତା ।
ଖେଳଇ ଜୀବନ-ସ୍ରୋତେ ଉତ୍ସାହର ଢେଉ
ଲାଗିଲେଣି ସର୍ବେ କାର୍ଯ୍ୟେ ବସି ନାହିଁ କେହୁ ।
ସରଳ କୃଷକ ଅଙ୍ଗେ ଖଣ୍ଡେ ମୋଟା ଖଦ-
ଶିରେ ଝାମ୍ପି ଦେଇ, କାନ୍ଧେ ଲଙ୍ଗଳକୁ ଲଦ,
ବଳଦ ଧଉଛି ତାର ଯୁଆଳରେ ଛନ୍ଦ,
ପାଞ୍ଚଣ ହାତରେ ଯାଏ ବନ୍ଧୁପଦ ବନ୍ଦ ।
ହୃଦୟ ଆନନ୍ଦଭର ପଡ଼ୁଛି ଉଚ୍ଛୁଳ
ଫିଟି ପଡ଼ୁଅଛି ସୁଖ- ସଙ୍ଗୀତ-କୁଥୁଳ ।
ଶିଖି ନାହିଁ ଜୀବନରେ କଳୁଷ ଓ ଛଳ
ଚଳେ କେଉଁଦିଗେ କଣ୍ଟା ନାହିଁତ ସ୍ମରଣ,
ଆନନ୍ଦ ନିଶାରେ ଭ୍ରମେ ଆନନ୍ଦ-ବଜାରେ
ଆନନ୍ଦ ସଉଦା କିଣି ମନର-ମଜାରେ ।

# ଭଡ଼ାଳିଆ ।

ଦେଖ ଶାଖୋଟକ ଶାଖାରୁ ଭଡ଼ାଳିଆ ପକ୍ଷୀଟି
ଉଡ଼ି ଯାଉଅଛି ମେଲାଇ କି ବଚନ ଶାଢ଼ୀଟି,
ଥରେ ଊର୍ଦ୍ଧ୍ୱେ ଥରେ ତଳକୁ ଥରେ ତେର୍ଚ୍ଛା ରଭସେ
ତରୁଣ-ଅରୁଣ-କିରଣେ ଖେଳେ ପକ୍ଷୀ ହରଷେ ।
ଝଲସି ଉଠୁଛି ବିହଙ୍ଗ ଅଙ୍ଗ-ନୀଳ ବରନ
ଦେଖିଲା କବିର ମାନସେ ଜନମାଇ ଚେତନ ।
ଭାବ ଦେଖି ଥରେ, ମାନବ ! ତୋର୍ କେଡ଼େ ଗରବ
ଦେଖାଇ ତୋ କର-ରଚନା କାରିଗର ପାଟବ ।
କେତେ ହାତୀ ଘୋଡ଼ା ବିହଙ୍ଗ କେତେ ତରୁ ଲତିକା
ନାନାବିଧ ରଙ୍ଗେ ରଞ୍ଜାଇ ରଚିଛି ତୋ ତୂଳିକା
କେତେ ଦେବ ଦେବୀ ମହାତ୍ମା- ଜନ-ବୃନ୍ଦ-ପଙ୍କ୍ତିକା-
ଅଙ୍କନେ ତୋ କର କୁଶଳ ଖ୍ୟାତି ରଟେ ପତ୍ରିକା
ଏଡ଼େ ଚାରୁ ନିତ୍ୟ ନୂତନ ମୂର୍ତ୍ତିମନ୍ତ ମାଧୁରୀ
ଫୁଟାଇ ପାରେ କି, ମାନବ, ତୋ ରଚନା-ଚାତୁରୀ ।
ଛାଡ଼ିଦିଅ ଏବେ ହୃଦୟୁ ଚିରପୋଷା ଗୁମାନ,
ତୋ ଚାତୁରୀ କେବେ ହେବ କି ପ୍ରକୃତିର ସମାନ ।



# ପାଣି ଯମୁନା ।

ସରସୀ ଚଞ୍ଚଳ ସଲିଳେ
        ନାଚେ ପଦ୍ମ ଫୁଲଟି,
ପାଣି ଯମୁନା ମୋ ନାଚୁଛି
        ସମୀରରେ ଚହଟି ।
ଶ୍ୱେତ ରକ୍ତ ପୀତେ ଚିତ୍ରିତ
        ନୀଳ ପକ୍ଷ ଦୁଇଟି,
ଏକେତ ସୁଶୋଭନ ଦେହଟି ନ-
        ପଡ଼େ ନେତ୍ରପଟଟି ।
ଦେଖାଇ ତଳକୁ ଯମୁନା
        ସରୁ ଲମ୍ବ ଚଞ୍ଚୁଟି
କହୁଛି ସଜୀବ ଦେଖ ଭେ
        ମୋର ଚିତ୍ର ତନୁଟି ।
ଧୀର ସମୀରଣେ ଆନ୍ଦୋଳ
        ଭୂରକେନ୍ଦ୍ର ସମ୍ଭାଳ
ରହିଛି ଗଗନେ ବିହଙ୍ଗ
        ନିମ୍ନ ଦୃଷ୍ଟି ତାହାର ।
ଶୀର୍ଷ ଚଳନ ସଙ୍କେତ
        ସ୍ଥିର ଜଳ ଉପରେ

ପଡ଼ିଗଲେ ଥରେ . ଭାଗ୍ୟକୁ
ପକ୍ଷୀ ଦୃଷ୍ଟିପଥରେ ।
ଚଲାମାରି ନେବ ଯମୁନା
ଦେଖୁଁ ଦେଖୁଁ ପଲକେ,
ଖସିବାକୁ ଚଞ୍ଚୁମୂନରୁ
ତାକୁ ଆଜ ଦେଲା କେ ।
ଲକ୍ଷ ଶିଖିବାକୁ, ମାନବ,
ଖୋଜୁଛୁ କି ନମୁନା
ଦେଖ ଦେଖ ତୋର ଆଗରେ
ନାଚୁଛି ମୋ ଯମୁନା ।



## ପୁଳିନ୍ଦ କୁମାରୀ ।

ଚଳ ଚଳ ନିଶାକର | ତୁଷାର ଧବଳ,
ପ୍ରଶାନ୍ତ ଗମ୍ଭୀର ନୀଳ | ଗଗନ ମଣ୍ଡଳ ।
ସ୍ନିଗ୍ଧନୀ ଯାମିନୀ ଶାନ୍ତ- | ମୋହନ ମନ୍ତ୍ରର
ଭସ୍ମରେ ନୀରବେ, ସର୍ବେ | ସୁଶାନ୍ତ ଅନ୍ତର ।
ଚୂତ କାନନରେ ମୋର | ପୁଳିନ୍ଦ କୁମାରୀ
ବସିଛି ଆନନ୍ଦ ମନେ | ହୃଦେ କି ଭଗ୍ନର ।

ଧନମଣି କର-ମ୍ଳାନ          କୁମୁଦ୍ କଳିକା
ବିକଶି ଉଠୁଛି କିବା          ପରଶି ଚନ୍ଦ୍ରିକା !
ଶରୀର-ପିଞ୍ଜର-ମୁକ୍ତ          ସାରିକା ନାୟିକା
ରହିଛି କି କାନ୍ତ ଅପେଶେ,          ତା ପ୍ରେମ ପ୍ରେମିକା ।

(୨)

ଜନକ ଜନନୀହୀନା          ସରଳା ବାଳିକା
ଦରିଦ୍ରତା-କୀଟ-କଣ୍ଠା-          କୁସୁମ-କଳିକା,
ଭ୍ରମୁ ଭ୍ରମୁ ଧନେ ଧାନ-          ବେଶରେ ମାର୍ଗରେ
ପଡ଼ିଲା ବୃଦ୍ଧ ପୁଳିନ୍ଦ          ନୟନ-ପଥରେ,
ନେଲା ଘରେ ବାଳିକା ସେ          ଦେଖି ତା ମାଧୁରୀ
ମୃତ-ଗଳାହାର ଭବେ          ସରଳା ଚତୁରୀ ।
ଛାଇତଳେ ବଢ଼ି ପୁଣି          ଯତନେ ଲାଳିତା
ଯୌବନେ ଚହଟି ଉଠି          ହେଲା ସେ ଲଳିତା ।
କାମୁକ ଏ ରୂପ ଦେଖି          ଛୁବର ପୁଳିନ୍ଦ,
ଫୁଟିଲା ଫୁଲେ ଲାଖିଲା          ତା ମନ ମିଳିନ୍ଦ ।
କୁମାର-ହୃଦୟ-କୁଞ୍ଜେ          ତା ପ୍ରେମ ସାରିକା
ଛାଡ଼ିଛି କୁମାରୀ ଆଜେ          ନୁହେ ସେ ରସିକା ।
ସ୍ୱରଗ ଅପୂର୍ବ ସ୍ୱର          ପିଶାଚ କବଳୁ
ମୁକତ ଲଭିବା ଅପେଶେ          କାନ୍ତ ସଙ୍କେତରୁ

ବସିଛି କାନନେ ଆଜ ପ୍ରଫୁଲ୍ଲ ଅନ୍ତରେ,
ଉଦ୍ଭବ ପକ୍ଷିଣୀ ପକ୍ଷୀ- ସୁଦୂ ଦେଶାନ୍ତରେ ।



# କେତକୀ ।

କଣ୍ଟକ ଆସନେ ବସି କେତକୀ ମୋ ହସି ହସି
ଢାଳଇ ଜଗତ ସାର ସୌରଭ ଧାର ଯେ ।
ଶୁଭ୍ର ତନୁ ଢଳ ଢଳ ଦଶେ କିବା ମନୋହର;
ଜିଣି ଜାମ୍ବୁନଦ କାନ୍ତି ଦଶେ-ତା ଭ୍ରାନ୍ତ ଯେ ।
ସୁଧା ବୋଳା ମୁଖ ଖଣ୍ଡି ଦେଉଛି କେଶରେ ମଣ୍ଡି
କେତକୀ ଗୁରୁ ହାସିନୀ ହୃଦ-ହ୍ଲାଦନୀ ଯେ ।
କହୁନାହିଁ ପଦେ କଥା ତଥାପି ମୋ ହୃଦବ୍ୟଥା
ବୁଝେ ତା ଭାବ ଅନ୍ତରେ ଯେଣୁ ସଙ୍ଗରେ ଯେ
ଦୂରେ ଥାଇ ସେ ଚହଟେ ପାଶେ ବାସ ନ ପ୍ରକଟେ
ଏ ବଧ୍ୟ ସିନା ବଧୁର ବୁଝେ ସୁଧୀର ଯେ ।
ନାହିଁ ଭେଦାଭେଦ ତଳେ, ଯିଏ ଆସି ପାଖେ ମିଳେ
ସ୍ନେହେ ତାକୁ କୋଳେ ଧରେ ସର୍ପେ ଭ୍ରମରେ ଯେ ।
ନାହିଁ ଖ୍ୟାତ ହୃଦୟରେ ତେଣୁ ସିନା ଆଷାଢ଼ରେ
ଶୁଣି ଘନ ଗର୍ଜ୍ଜନ ଏତେ ପ୍ରସନ୍ନ ଯେ ।

ବୁଝ କି ସାଧୁ ଅନ୍ତର    କେତକୀ-ଗୁପ୍ତ-ମନ୍ତର
ଲଭି ତା ମହତ୍ତ୍ୱ ଦୀକ୍ଷା    ଦଅଇ ଶିକ୍ଷା ଯେ ।



# କୁମୁଦିନୀ ।

ଅବଲମ୍ବି ଅସ୍ତାଚଳ    ବାସର-ରଞ୍ଜନ
ଲୋହିତ କିରଣେ ରଞ୍ଜି    ବାରୁଣୀ ଗଗନ
ଲଭନ୍ତ ପରାଣ ପ୍ରିୟା-    ଅଧର ଚୁମ୍ବନ,
ରଚନ୍ତି ଫଗୁଖେଳ    ଦିଗଙ୍ଗନାଗଣ ।
ଘଟେଣି ଭିତରେ ଦେଖ    ରାକା-ଶଶି-ଟିକା
ଶାନ୍ତ ସଖୀ ସଙ୍ଗେ ବିଜେ    ରଜନୀ-ନାୟିକା ।
ହିମକର-ବୀଚ ମୁଟେ    ଶୁହାନୀ ଯାମିନୀ,
ବିଳାସୀ କୋଳେ ଦୋଳଇ    ସୁଖେ ବିଳାସିନୀ ।
ଏ ସୁଖ ସମୟେ କାହିଁ    ସରସୀବାସିନୀ
ଦିବସ ବିରହ ଅନ୍ତେ    ନୂଆ ବିହିଙ୍କାଣୀ·
ଦେଖି ନିଜ ପ୍ରାଣବନ୍ଧୁ    ଦେବ ନିଶାକର
ଅନୁରାଗଭରେ ନାଚେ,    ହୃଦୟ ଚଞ୍ଚଳ;
ଗୁହାଁଣ ପ୍ରାଣରମଣେ    ସହାସ ନୟନେ
ଚମ୍ଭି ସଲଳ ବ୍ରୀଡ଼ା-    ବିନମ୍ର ବଦନେ ।

ପ୍ରେମ-ନଦୀ ଜୁଆରେ ହୃଦ ନ ପଡ଼େ ସମ୍ଭାଳି,
ପାଗଳିନୀ ପରି ନାଚେ ଅତି ଉଚ୍ଛୁଳି ।
ଇଙ୍ଗିତେ ପ୍ରକାଶି କେତେ ବିଚ୍ଛେଦ କାହାଣୀ
ଆଡ଼ରୁଷା ହୋଇ ବସେ ସହଜେ ମାନିନୀ ।
ଭାଷି ଶୃଙ୍ଗୁ ସୁଧାକରେ କରି ଆଲିଙ୍ଗନ
ବୋଧନ୍ତ ପ୍ରିୟା ମାନସ ରଜନୀରଞ୍ଜନ ।
କୁମୁଦିନୀ ନୟନରୁ ଶିଶିରାଶ୍ରୁ ପଡ଼େ
ମାନିନୀ-ହୃଦୟୁଁ ମାନ- ମୂଳତା କି ଝଡ଼େ ?
ପ୍ରାକୃତ ଚୁମ୍ବନେ ଆଉ କି ରହେ ଅଭିମାନ ?
ଖରରଶ୍ମି ତୃଣ କାହିଁ ନୁହେ ଭାସମାନ ?
ତେଜି ମାନ କୈରବିଣୀ ପ୍ରୀତିଭିବହ୍ଵଳା
କାନ୍ତ-ଆଲିଙ୍ଗନେ ଖୋଲି ପ୍ରମୋଦ ପସରା
ଖେଳ ଦୋଳି ହସି ନାଚି କାଟିଦିଏ ରାତି,
ଜୁଇଁଲାଣି ନଭେ ଏବେ ତାରକା ପ୍ରଭାତି
ହିମକର କୁମୁଦିନୀ- ବିରହ ଦୂତିକା
ପ୍ରେମିକ ପ୍ରେମିକା ମୁଖ ପଡ଼ିଗଲା ଫିକା ।
ବିହଙ୍ଗ ନିସ୍ଵନେ ଦୁହେଁ ବୋଧିଲେ ବହୁତ,
ଆଶ୍ୱାସଇ ଉଭେ କେତେ ମଧୁର-ମରୁତ ।
ସରୋଜିନୀ ବନ୍ଧୁ ଦିଲ୍ଲୀ- ପ୍ରେମଲିପି ପଢ଼ି
ମଧୁକର ପଦ୍ମୁ ପଦ୍ମେ ଯାଉଅଛି ଉଡ଼ି ।

ବାନ୍ଧବ ବିଚ୍ଛେଦ କରିଁ
ଭ୍ରାନ୍ତି.ଭ୍ରାନ୍ତ ମନେ
ସଲିଳେ ପଡ଼ିଲା ଢଳି
ନିଜ ବୃନ୍ତ ସନେ ।
ସଜନ୍ତୁ କରଇ ବସି
ସଂସାରେ ନିସ୍ତୃତ
କରେ ଦୁଃଖୀ ସୁଖେ ସୁଖ
ଦୁଃଖେ ପରିଣତ ।
ଚକ୍ରୀ ଚକ୍ର ଭ୍ରାମ୍ୟେ ଯିନା
ମର ଜଗତରେ
ମାନବର ଭାଗ୍ୟଚକ୍ର
ଫେରଇ ନିରନ୍ତରେ ।



# ଆଶା ।

ମରଣସଙ୍ଗିନି ଆଶା,
କାହିଁକି ଏ ଛଳନା ?
ଲଳିତ ମୋହନ ବେଶେ
ଆଉ ଦେଖା ଦିଅ ନା,
ସଜନି, କ୍ୱଣିତ ଭୂଷା
ଚରଣରେ ଝଙ୍କୁ ନା
ଖଞ୍ଜନ-ଗଞ୍ଜନନେତ୍ରେ
ଭିନ୍ନାଞ୍ଜନ ରଞ୍ଜ ନା ।
ନନ୍ଦନର ପାରିଜାତମାଳା
ଗଳେ ପିନ୍ଧ ନା
ପୋଛିଦିଅ ଭାଲପଟୁଁ
ଗୋରୋଚନା-ରଚନା
ସଜନି, ମଧୁର ଅଧରେ
ଦରହସ୍ତ ତ ହସ ନା
ଦରମର ପ୍ରଣୟୀକୁ
ତୋ କଟାକ୍ଷ ହାଣ ନା ।
ବିଦ୍ୟାଧରୀ ବେଶେ ତୋତେ
ଦେଖିବ ନା ନୟନେ
କଲିଣି ଏ ପଣ, ସଖି,
ଥରେ ଭୁଲିଲେ ଜୀବନେ

ସଜନ, କାଳିମା ରେଖା  କମ୍ପା ପଡ଼େ ବଦନେ ?
ସତେକି ଛାଡ଼ିବ ତୋତେ  ମୋ ଜୀବନେ ମରଣେ ।
ଫିଙ୍ଗିଦିଅ ଅଙ୍ଗୁ ବେଶ-  ଭୂଷା ପାଠ ପତନୀ
କଷାୟ ବସନ ପିନ୍ଧି  କଣ୍ଠେ ମୁଖ ବେଷ୍ଟନୀ
ସଜନ, ତୁଳସୀମାଳା  ସଙ୍ଗେ ନାମକରଣୀ
ଭସ୍ମ ବିଲେପନେ ଦେନ  ସାଜ ବରବରଣ !
ଋଷିକନ୍ୟା ରୂପେ ଦେଖୁ-  ଥିବ ଦିନଯାମିନୀ
ଉଟଜେ ଅର୍କିବ ଶାନ୍ତ  ମୁକ୍ତି ଦେହଧାରିଣୀ ;
ସଜନ, ନିରାଶ ପ୍ରାଣେ  ହେବୁ ଆଶାଦାୟିନୀ
ତୋ କ୍ଷେପଣି ଧରି ହେଲି  ଦେବି ମୋର ତରଣୀ ।



# ଆବାହନ ।

ଆସ ଆସ ସଖା  ନ ହୁଅ ବିମନା,
କେହି ନ ପଚାରୁ  କାହିଁକି ରଶୋଚନା ?
ମୋ ଶରୀର କଷ  ଫିଟାଇ ଦେଇଛି,
ପ୍ରେମ ଆଲିଙ୍ଗନେ  ବାହୁ ପ୍ରସାରିଛି,
ଆସନ ସକାଶେ  ପାତିଛି ହୃଦୟ
ବସ ବନ୍ଧୁ ସୁଖେ  ନ ହୁଅ ଅଥୟ ।

ଅବାଲ୍ୟରୁ ତୁମ୍ଭେ　　　　ଚିର ସହଚର
ଦୁଃଖ ସୁଖ ବନ୍ଧୁ　　　　ଜୀବନ ସୋଦର ।
ଜୀବନେ ଦେଖିଲି　　　　କେତେ କେତେ ସଖା
ନିକଷେ କଷିଲି　　　　ସମସ୍ତେ ତ ଚଖା ।
ଆସନ୍ତି ସରବେ　　　　ବୁଝି ଯେଝା ବେଳ
ଲଗାନ୍ତି ଚହଟେ　　　　କେତେ ପ୍ରେମଖେଳ,
ପୂରିଲେ କାମନା　　　　ଖେଳ ଯାଏ ଭାଙ୍ଗି
ଦେଖା ନ ମିଳଇ　　　　ମୁହୂର୍ତ୍ତିକ ଲାଗି ।
ତୁମ୍ଭପରି ବନ୍ଧୁ　　　　ଦେଖିନାହିଁ ଜଣେ
ଚିରସାଥୀ ହେଲ　　　　ସଂସାର ଗହନେ ।
ରକ୍ତ ମେଦ ମାଂସ　　　　ତବ ସୁଖାସନ
ସାରିଛି ଆଗରୁ,　　　　ମୋ ଅସ୍ଥି ଚରମ
ରଖିଛି କେବଳ　　　　ସମ୍ବାଧେ ଯତନେ
ତୁଞ୍ଜ ସଖା ଲାଗି　　　　ନ ବଶ୍ବର ମନେ ।
ପ୍ରେମ ସମ୍ଭାଷଣ　　　　ବନ୍ଧ ତ ହେଲଣି
ମନ ବୁଝୁନାହିଁ　　　　ଦେବାକୁ ମେଲାଣି
ବସିଥାଅ ବନ୍ଧୁ　　　　ହୃଦୟ ପଞ୍ଜରେ
ହସି ଖେଳ ପ୍ରାଣ—　　　　ବିହଙ୍ଗ ସଙ୍ଗରେ·
ତୁମ୍ଭ ମହାଶିକ୍ଷା　　　　କରି ଗଣ୍ଠିଧନ
ବାନ୍ଧିଥିବ ସଦା　　　　ଅଞ୍ଚଳେ ଯତନ—

ଦାବାନଳେ ଜଳେ ସହଜ-ମନ୍ତର
ଅଳ୍ପ ହେଲେ ତୁମ୍ଭେ ସହ ଅକାତର ।
ସମସ୍ତ ଆସିଲେ ପକ୍ଷୀ ଉଡ଼ିଯିବ,
ଦୁଃଖ ଏକା ତୁମ୍ଭେ ପଛେ ପଡ଼ିଥିବ ।



# ଦୁର୍ଭିକ୍ଷ—ଭେରୀ ।

କହେଲ ରେ । ସୁନାର ସଂସାର ଭାଙ୍ଗିଲା ରେ ।।
ଧାର ଶ୍ରାବଣରେ, ଚଣ୍ଡାଂଶୁ ତାପରେ
ଜଳଭରା ଧରା ଶୁଖିଲା ରେ ।
ଦେଖିଣ କେଦାର କରେ ଧୂମୋଦ୍ଗାର
କୃଷୀବଳ ବୁଦ୍ଧି ହଜିଲା ରେ ।
କନା ଚିନ୍ତା ସଙ୍ଗେ ପୁଣି ଦାନା ଚିନ୍ତା
ଗଛପତେ ପ୍ରାଣ ବସିଲା ରେ ।
ବୁଣିଥିଲା ଧାନ ଶୁଷି ସୁଯତନ
ବଦନ ଆଉ ନ ପାଇଲା ରେ ।
ମେଘ ଚାଲୁ ବର୍ଷି ନ ଦେଖି ଆକାଶେ
ରବ ଆଶା ମନ୍ଦ୍ରୁ ଛାଡ଼ିଲା ରେ ।

ପୌଷମାସେ ଆହା ଗୃଷୀ ସର୍ବନାଶ
ଅବସ୍ଥାକୁ ଏବେ ଭଜିଲ୍ଲ ରେ ।
କୋଷ୍ଠ କଣ୍ଠେ ଉଠେ ହାହାକାର ରବେ
ଦୁର୍ଭିକ୍ଷର ଭେଣ୍ଟ ବାଜିଲ୍ଲ ରେ ।
ନଅଙ୍କରେ ଥରେ ଶୁଣାଥିଲ୍ଲ ଏହା
ତାହାଠାରୁ ବଳି ଗର୍ଜିଲ୍ଲ ରେ ।
ମାତା ଅନ୍ନପୂର୍ଣ୍ଣା ଜନ୍ମଭୂମି-ସଖୀ—
ସଙ୍ଗ ଲଜେ ଦୁଃଖେ ଛାଡ଼ିଲ୍ଲ ରେ ।
ଭୀମ ଡାକ ଶୁଣି ଯଥା କୁରୁମଣି
ସ୍କନ୍ଧଦେଶୁଁ ଶିସ୍ତ ତୁଟିଲ୍ଲ ରେ ।
ଧାନ ମାଣ ଅଣେ, ସୂତାଖିଅ ପଣେ
ଚଣାମୂଲ୍ୟ ମୁଗୁଁ ବଳିଲା ରେ ।
ବାରଙ୍ଗା ବୁଲିଲେ ମାଣ୍ଡିଆ ନ ମିଳେ
ଦେଶ ଛାରଖାର ହୋଇଲ୍ଲ ରେ ।
ଚଷା ବାପୁଡ଼ାଟି ହଳ ବଳଦ ବିକ
ପାଞ୍ଚଣ ଗୃଳରେ ଖୋସିଲା ରେ ।
କଂସା ଲୋଟା ଥାଳ କପାଳକୁ ଆଦର
ଦୁଃଖେ ଘଡ଼ ବର୍ଣ୍ଣ ଆସିଲା ରେ ।
ଘର ବାହାରରୁ ସବୁ ଶେଷ ଦେଖି
ନାକେ କାନେ ହାତ ମାରିଲା ରେ ।

ନୋଳ ମାକରଣା ବକ ଫୁଲଗୁଣା
ଗୁଣ୍ଡୁଣୀ ହାତକୁ ଗୁହାଁଲ ରେ ।
ଉତ୍ତର ଗୋଟିକ ଗୋଟି ଖଣ୍ଡୁ ମୁଦ
ପାଟସୂତା ଖିଏ ବାନ୍ଧଲା ରେ ।
ସବୁ ସରିଗଲା ଦେଖି ନରନାରୀ
ପେଟେ ଓଦାକନା ଲଦଲା ରେ ।
ପେଟ ଛଟପଟ ସମ୍ଭାଳି ନପାରି
କିଏ କେଉଁ ବାଟ ପାଞ୍ଚିଲା ରେ ।
ଲଜ୍ଜା ଭୟ ଗ୍ଲାନ ମହତ୍ତ୍ୱ ନ ଜାଣି
କଣ୍ଠେ ଯାହା ଶୁଣା ନଥିଲା ରେ
ସ୍ୱାମୀ ଯାଏ ଛାଡ଼ି ପତ୍ନୀ ପୁତ୍ର କନ୍ୟା
ଚକ୍ଷାର ସଂସାର ସରିଲା ରେ ।
ମାଆ ନିଏ କାଢ଼ି ପୁଅହାତୁଁ ଅନ୍ନ
ଜନନୀ ମମତା ଛାଡ଼ିଲା ରେ ।
ରାଜ୍ୟ ଛାଡ଼ି କିଏ ପରିବାର ସଙ୍ଗେ
ଆସାମକୁ ବାଟ କାଟିଲା ରେ ।
କେତେଧନ ପାଇଁ ଅବା କିଏ ଜାଣେ
ଆମଦେଶୁଁ ହାଟ ଉଠିଲା ରେ ।
କଟକେ ଚହଟା ଢ଼ପୋଘରଠାରେ
ସରଦାର କାମ ବଢ଼ିଲା ରେ ।

ଯା ହେବାର ହେଉ  ଧନ୍ୟ ତୁମ୍ଭେ ଅସାମ
ଲକ୍ଷ ଲକ୍ଷ ପ୍ରାଣୀ ପୋଷିଲା ଛର ।
ସିଏ ଗୃଲିଗଲା  ସିଏ ତରିଗଲା
ପେଟକୁ ଦମୁଠା ପାଇଲା ରେ ।
କାହିଁ ଅବା କେହ୍ନ  ଦୁଃଖ କଷ୍ଟ ସହ୍ଯ
ମାଟିକୁ କାମୋଡ଼ ରହିଲା ରେ ।
ତାର ଦୁଃଖ ସିନା  ହେଲା ଅସରନ୍ତି
କବ ବଚନକୁ ବଳିଲା ରେ ।
ଦୁଇଦଣ୍ଡ ଅଟେର  ନ ମିଳିଲା ମୁଠେ
ହାଡ଼ରୁ ମାଉଁସ ଝଡ଼ିଲା ରେ ।
ପିଠି ପଛପାଖେ  ପେଟ ଲାଗିଗଲା
ନୟନ କୋଟରେ ପଶିଲା ରେ ।
ଗଣି ହୋଇଯାଏ  ଅସ୍ଥି ଖଣ୍ଡି ଖଣ୍ଡି
ଯୌବନେ ବୃଦ୍ଧତ୍ୱ ଆସିଲା ରେ ।
ପୋଡ଼ା କପାଳକୁ  ଜବଟ ନିଦା
ବନେ ଫଳ ମୂଳ ନୋହିଲା ରେ ।
ଯାହା ହେଲା ତାହା  ବନ୍ଧୁ ଅଣିବାକୁ
ଅଙ୍ଗରୁ ଖଜଣ ତୁଟିଲା ରେ ।
ଅଶ୍ୱତ୍ଥ ପତର  ଅଣ କଦଳୀଆ
ଶାଳୀ ଫଳ ଯାଜ୍ଞା ମିଳିଲା ରେ ।

ଷୋଳକ କଙ୍କାର ସୁକୁମାର ନର
ଛେଳିପରି ଆହା ଚରିଲା ରେ ।
ଲହଙ୍ଗା ଗୃକୁଣ୍ଡା କେନାସିର ଶାଗ
କେତେକ ଜୀବନ ରଖିଲା ରେ ।
ଅନ୍ନଛଡ଼ା ପେଟେ ପଡ଼ ପୁଣି କାର
ବାତାଜୀର୍ଣ୍ଣେ ପ୍ରାଣ ହରିଲା ରେ ।
କାହିଁ କେଏ ଗଛ- ମୂଳେ ବସୁଁ ବସୁଁ
ପ୍ରାଣ-ବିହଙ୍ଗଟି ଉଡ଼ିଲା ରେ ।
ଯେ ଯେତେ ଯାଉଁକେ ଉପାୟ କାଢ଼ିଲେ
ସବୁ ସିନା ବ୍ୟର୍ଥ ହୋଇଲା ରେ ।
ଧନିକ ବଣିକ ଦୁଃସ୍ଥ ରକ୍ତ ଶୋଷି
ପେଟକୁ ବଢାଇ ବସିଲା ରେ,
ପାଞ୍ଚଟଙ୍କା ଚଜେ ପାଞ୍ଚବୋଡ଼ ଦେଇ
ସାଡ଼ କାରେବାର ବାହୁଲା ରେ ।
ଶାସକେ ତଡ଼ାଗ କୂପ ଖୋଳାଇଲେ
ରାଜପଥେ କାମ ଲାଗିଲା ରେ;
ସ୍ଥାନେ ସ୍ଥାନେ ସେନା- ସମିତି ବସିଲା
ଅନ୍ନଛତ୍ର କେତେ ଖୋଲିଲା ରେ ।
ନ ହେଲା ସମ୍ଭାଳ ଖରସ୍ରୋତ କିଏ
ବାଲିବନ୍ଧେ କେବେ ରୋଧିଲା ରେ ।

ସକଳ ଉପାୟ　　　　　　ଗଲା ଫୁଟି ଫାଟି
ବିଧାତା ବିଧାନ ଙ୍କଣିଲା ରେ ।



# ଆଶା—ଲତା ।

ବାସନ୍ତ ସମୀର　　　　ବହେ ଧୀର ଧୀର,
କମ୍ପା ଲୋ ଲତିକେ !　　ଏଡ଼େ ତୁ ଅଧୀର ?
ଉଠୁଛୁ ପଡ଼ୁଛୁ　　　　ହସୁଛୁ କାନ୍ଦୁଛୁ
ଗଗନେ ଅନାଇଁ　　　　ଭୂତଳେ ଚୁମ୍ବୁଛୁ ।
କି ବିଚିତ୍ରଭାବ　　　　ଜାଗି ତୋ ଅନ୍ତରେ
ଆଣିଦିଏ ସୁଖ,　　　　ପୁଣି ଦୁଃଖ ପରେ ?
ବସନ୍ତ ମାଧୁରୀ　　　　ଦେଖି ହସ ହସ
ନିଦାଘ ସୁମର　　　　ପୁଣି କି ବିରସ ?
ମୋ ଆଶା ନବୀନା　　　ହୋଇଛି ସୁଖିନୀ
କରି ତୋତେ ତାର　　　ଜୀବନ ସଙ୍ଗିନୀ ।
ସୁକୁମାରୀ ଧନୀ　　　　ଦିବସ ଶର୍ବରୀ
ଉଠୁଛି ପଡ଼ୁଛି　　　　ସଦା ତୋ ହସରି ।
ଦୁଇ ଭଗ୍ନୀ ସମ　　　　ଲଲାଟ ଲିଖନ
ତେଣୁ “ଆଶା-ଲତା”　　ବଚନ ତୁଳନ ।

# ସୂର୍ଯ୍ୟମୁଖୀ ।

କନକ ବରନେ ଗୃରୁ ସୂର୍ଯ୍ୟମୁଖି !
ତୋ ପରି ଦ୍ୱନେ କ ମୁହିଁ ହେବ ସୁଖୀ ।
କାହିଁକ ଲୋ ହାସେ ପୂରିଛି ବଦନ
କାହା ପ୍ରତି ଏଡ଼େ ସ୍ଥିର ତୋ ନୟନ ?
ଦେଖିକ 'ତପନ ତୋ ଜୀବଜୀବନ
ହୋଉଅଛି ମନ ଏଡ଼େ ଛନ ଛନ ?
ମୋହୁଛି ତୋତେ କ ଦେବ ତପନର
ଚିତ୍ତ-ଆକର୍ଷକ ମୋହନ ମନ୍ତ୍ରର ।
ବନ୍ଦୁ ବନ୍ଦୁ ପଡ଼େ ପ୍ରେମ-ମକରନ୍ଦ,
କହିଲେ ନ ସରେ ତୋ ହୃଦ ଆନନ୍ଦ ।
ଧନ୍ୟ ସୂର୍ଯ୍ୟମୁଖି ! ଧନ୍ୟ ତୋ ଜୀବନ
ଜୀବଦେବେଶେ ଭକ୍ତି ତୋର ଅତୁଳନ ।
ତପନ ତୋ ଧ୍ୟାନ ତପନ ଜୀବନ,
ଯେତେଣେ ଧାନକର ତେତେଣେ ତୋ ନନ୍ଦନ ।
ତୋର ଏ ଧରମ ଶିଖି କାଲେ ଦ୍ୱନେ
ଗୃହିଁ ରହିଥିବ ମୋ ପରାଣ ଧନେ ?
କନକବରନେ ଗୃରୁ ସୂର୍ଯ୍ୟମୁଖି !
ସତେ କ ଲୋ ଦ୍ୱନେ ପ୍ରାଣେ ହେବ ସୁଖୀ ।

# ସ୍ତବ ।

---

ସୁନୀଳ ଗଗନେ ଶଶୀ ଆମୋଦ ତରଙ୍ଗେ
ଖେଳ ଘେନେ ସୁଧା-ଜ୍ୟୋତ୍ସ୍ନା ତାରକଗଣ ସଙ୍ଗେ,
ପ୍ରଭୋ, ରଜନୀରଞ୍ଜନ
ନିରନ୍ତର କରେ ତୋର ମହିମା କୀର୍ତ୍ତନ ।

ଅରୁଣୀ ଆକାଶେ ଧରି ବଚନ ତୂଳିକା
ଅଙ୍କି କେତେ ଚିତ୍ର ଖୋଲ ଶୋଭା ମଞ୍ଜୁଷିକା
ପ୍ରଭୋ, ପଙ୍କଜବାନ୍ଧବ
ପ୍ରକାଶୁଛି ରଙ୍ଗେ ତୋର ଶୋଭାର ବିଭବ ।

ସୁଦୂର ଗଗନେ ବସି ଘନାଘନ କୋଳେ
ହସି ହସି ପ୍ରାଣେଶ୍ୱରି ସଙ୍ଗେ ପ୍ରେମଭୋଳେ,
ପ୍ରଭୋ, କନକବସନା
ସୌଦାମିନୀ ଧ୍ୱନି ଧରେ ତୋ ନାମେ ମୂର୍ଚ୍ଛନା ।

ଘନମଣି ପୂର୍ବଭାଗେ ଶୋଭେ ଶକ୍ରଗୃହ
ସରଞ୍ଜ ସପତବର୍ଣ୍ଣ ବିଭୂତି-କଳାପ,
ପ୍ରଭୋ, ଇନ୍ଦ୍ର-ଶରାସନ
ପ୍ରକଟଇ ବଚନ କି ତୋହର ସର୍ଜନ ।

ଅକୂଳ ଦିଗନ୍ତବ୍ୟାପୀ ନୀଳ ପାରାବାର
ବିସ୍ତାର ବିରାଟ କାୟା ପ୍ରଶାନ୍ତ ଉଦାର,
ପ୍ରଭୋ, ରବି-ଶଶି-କରେ
ତାଳେ ତାଳେ ନାଚ ତାଳେ ମନ୍ଦମୀ ନକରେ ।
ସ୍ୱଚ୍ଛନୀର ସୁଗଭୀର ସୁଦୂରବାହିନୀ
ସଖୀ ସହଚରୀବୃତା ଲହରୀମାଳିନୀ
ପ୍ରଭୋ, ଶୈଳ-ନନ୍ଦିନୀ
ତୋର ପ୍ରେମାଳାପେ ସିନା କଳନନାଦିନୀ ।
ପାଷାଣବନ୍ଧୁର ଯୋଗ — ନମସ୍ତୁ ଅଚଳ
ପାଦପ ଲତିକାକୁଳେ ଶୁଭ୍ର କଳେବର
ପ୍ରଭୋ, ତୁଙ୍ଗମସ୍ତାଧର
ନିତ୍ୟ ରବେ ଗାଉଛି 'ତୁମ୍ଭେ ଦୟାର ସାଗର ।
ନଭସ୍ତୁମ୍ଭୀ ଗିରିଶିରେ ସମୀର ମଳୟ
ହଲାଇ ନଚାଇ ତରୁ ବଲ୍ଲରୀ-ନିଚୟ,
ପ୍ରଭୋ, ନିଜଗତପ୍ରାଣ
ଧରିଅଛି ନଗସଙ୍ଗେ ତା ସଙ୍ଗୀତେ ତାନ ।
ନିକୁଞ୍ଜେ ଗହନବନେ ତରୁ ଅନ୍ତରାଳେ
ଅଥବା କୁସୁମଶୋଭୀ ପାଦପ ଶାଖାଗ୍ରେ
ପ୍ରଭୋ ମଧୁର ମଧୁରୀ
ଦେଖାନ୍ତ ଜଗତେ ତୋର ତୂଳିକା ଚାତୁରୀ ।

ବକୁଳ କଳି ମଣ୍ଡିତ ରସାଳ କାନନେ
ତୋ ମଧୁ ସଙ୍ଗୀତ ଗାଇ ସୁଲଳିତ ସ୍ୱନେ,
ପ୍ରଭୋ, କୋକିଳ କୋକିଳା
ବିହାର କରନ୍ତି ରଚି ନାନାରଙ୍ଗେ ଲୀଳା ।
ଢଳ ଢଳ ସୁନିର୍ମଳ ସରସୀ ସଲିଳେ
କଣ୍ଟକ ମୃଣାଳେ ନାଚି ମୃଦୁଳ ସମୀରେ,
ପ୍ରଭୋ, ଶୋଭାର ସାଗର
ତାମରସ ବନ୍ଦେ ତୋର ଚରଣ କମଳ ।
ମଲ୍ଲିକା କଳିକା ପୁଣି ଗୋଲାପ ମଞ୍ଜରୀ
ଫୁଟି ଗୃହବନେ ପୂଜେ ସୌରଭ ଲହରୀ,
ପ୍ରଭୋ, ତୋର ପବିତ୍ରତା-
ପାରିବାକୁଁ ଢାଳନ୍ତି କି ଏକ ବିନ୍ଦୁ ସତ୍ତା ।
ଅଭ୍ର ସାଗରେ ଭୂଧରେ ଗହନ କାନ୍ତାରେ
ଯେଣେ ଚାହେଁ ତେଣେ ଦେଖେ ନାଚ ତାଳେ ତାଳେ,
ପ୍ରଭୋ, ବିଭୁତି ତୋହର
ପ୍ରକାଶନ୍ତି ମୁଦେ ସର୍ବେ ଦିବସ ଶର୍ବରୀ ।
ମାୟା ମମତାରେ ପଡ଼ି ଯାପୁଛି ଜୀବନ,
କରୁଛି କେବଳ ମୁହିଁ ପାପ ଉପାର୍ଜନ,
ପ୍ରଭୋ, କଳୁଷନାଶନ !
ତୋର ଦୟା ବିନା ନାହିଁ ଗତି ମୋର ଅନ୍ୟ ।

ଭକ୍ତ ଜୀବନ ମୋ ହୃଦ- ପଙ୍କଜ-ତପନ
ଜଗଦାନ୍ଧ ଗୁରୁ ନାଥ ପରମ କାରଣ;
ପୁଞ୍ଜେ, ଶ୍ରୀଚରଣେ ଅଳି
ଲଭି ସୁଧାକର ଫୁଟୁ ହୃଦପଦ୍ମ କଳି ।



# ଗୋଲାପ ।

ଆହା ମୋ ଗୋଲାପ ଫୁଲ ଦିଶଇ କେଡ଼େ ମଞ୍ଜୁଳ
ଧୀରେ ଧୀରେ ଦୋଳି ଉଷା ମନ୍ଦ ପବନେ,
ଉଜଳେ ଶିଶିର ମୁକ୍ତା-ଥୋପି ବଦନେ ।
ବାନ୍ଧିଛି କି ତରୁ ଗଭି, ବସିଛିକି ଅଳି ସଭି,
ବାଳାରୁଣ କାନ୍ତି ଜିଣି ଫୁଲଟି ଝୁଲେ
ଆହା କି ସରଗ ଶିଳ୍ପ ଗୋଲାପ ଧରେ ।
ବହଇ ନନ୍ଦନବନ- ପାରିଜାତ ସୁମୋହନ
ସୁରଭି କୁସୁମୁଁ, ଦିଗ ଉଠେ ଚହଟି,
ଆନନ୍ଦେ ନାଚୁଛି ବୃନ୍ତେ ମୋର ଫୁଲଟି ।
ପରାଗ ପାଣ୍ଡୁ-କେଶର ସମୀରଣେ ଥର ଥର
ଏପାଖ ସେପାଖ/କେବେ ପଡ଼ୁଛି ଢୁଳି
ବୋଲଇଛି କୁସୁମ ମୁଖେ ଶୋଭା ମାଧୁରୀ ।

ମଧୁପେ ଗୁଞ୍ଜନ କରି    କୀର୍ତ୍ତି ତାର ଗୁଣାବଳୀ
ଯାଆନ୍ତି ଗୋଲାପ ପାଖେ ଗୋଷ୍ଠିକି ଗୋଷ୍ଠି,
ମଧୁଲୋଭେ ଚରଣରେ ପଡ଼ନ୍ତି ଲୋଟି ।

ରେ ପ୍ରିୟ ସୁମନ ମୋର    ଛଣା ପୀୟୁଷରେ ତୋର
ହୃଦୟ ପେଟିକା ପୂର୍ଣ୍ଣ, ତହୁଁ ମାଧୁରୀ
ଦର ଦର ଝରିପଡ଼େ ପ୍ରାଣେ ସବୁରି ।

ତୋପରି ଶୁଭ୍ର ସୁମନେ    କଣ୍ଟକ ବୃକ୍ଷେ କେସନେ
ରଚିବାକୁ ବିଧାତାର ବଳିଲା ମନ ?
ହେମଲତେ ଶୋହେ ସିନା ତୋର ଆସନ !

କି ବିଚାର ଦେଖ ବିଧି    କମଳ ଲାବଣ୍ୟ ନିଧି
ବସାଇଲେ ପଙ୍କିଲ ସରେ ମୃଣାଳ ପରେ
ବାସହୀନ କିଂଶୁକ କି ସୌନ୍ଦର୍ଯ୍ୟ ଧରେ !

ବିଧି ଅଟେ ଅବିବେକ    ବୁଦ୍ଧି ନାହିଁ ତା ତିଳେକ
ଦେଖି ତା ରଚନା-ଚିତ୍ତ ହୁଏ କଳ୍ପନା;
ବିଧାତା ବିଧାନେ କମ୍ପା ଏ ବିଡ଼ମ୍ବନା ?

ଅବିବେକ ନୁହେଁ ବିଧି    ଗୋପନେ ସାଧେ ସେ ସିଦ୍ଧି
ବୁଝେ ତା ସର୍ଜନା ବିଧି ମେଲି ନୟନ
ଦେଖିଲେ ମାନବ ପିନ୍ଧି ଜ୍ଞାନ ଅଞ୍ଜନ ।

ବିକଳାଙ୍ଗ କୁଶ୍ରୀବର    ହେଲେ କି ହୋଇବ ନର
ଗୁଣଘେନ ଶୋଭାପାଏ ଜନ ସମାଜେ
ତରୁ ମୋର ଫୁଲଲାଗି ଯେହ୍ନେ ବସନ୍ତେ ।

ଗୁଣସ୍ଥାନ ଯେ ହୃଦୟ ଅଟେ ସେ ନୀରସମୟ
ମୋହନ ମୂରତି ତାକୁ ନପାଏ ଶୋଭି
ପଲାଶ କୁସୁମେ କାର ମାନସ ଲୋଭି ?



## ସୁଖସ୍ୱପ୍ନ ।

ଖେଳୁଥିଲି ଯବେ ମାତାକୋଳେ,
ଦେଖୁଥିଲି ସୁଖ- ସ୍ୱପ୍ନ ଭୋଳେ-
ଯାପିବି ମୁଁ ସୁଖେ ମୋ ଜୀବନ
ଫୁଲେ ପୂଜି ମାତା ଶ୍ରୀ ଚରଣ ।
ଭକତରେ ଯୋଡ଼ି ବେନିପାଣି
ଛିଡ଼ା ହୋଇଥିବି ଆଜ୍ଞା ମାନି ।
ସ୍ୱପନେ କି ଅବା ଜାଗରଣେ
ଦେବନାହିଁ ଦୁଃଖ ତାର ମନେ ।
ଜନନୀ ସନ୍ତୁଷ୍ଟି - ସାଧନରେ
ଢାଳିବି ଜୀବନ ଜଗତରେ ।
ହୃଦ ଝରୁକାରେ ମୋର ବସି
ଚାହିଁଥିବ ମୋତେ ହସି ହସି ।

ପୁରୁଣା ସେ କୋଳ,      ଆଜ ନୂଆ
ଅଙ୍କ ପୁଣି ମୋର      ଆଗେ ଥୁଆ ।
ନୂଆ ଦେଖି ଭୁଲେ      ପୁରୁଣାକୁ,
ହୃହା ମେଲଦଏ      କରୁଣାକୁ ।
ଭାଙ୍ଗିଲା ସ୍ୱପନ,      ସବୁ ଗଲା,
ଜନନୀ ମରମେ      ପୋଡଗଲା ।
ତଳେ ଦୋଷ ଦେଖି      ବାକ୍ୟ ବାଣ
ହାଣେ ମୁଁ, କାନ୍ଦଇ      ତାର ପ୍ରାଣ ।
ବଢିଛି ମୁଁ ଯେଉଁ      ନୂଆ କୋଳେ
ସୁଖ-ସ୍ୱପ୍ନ ଦେଖେଁ      ତହୁଁ ଭୋଳେ ।



## ମା ।

କାହିଁକି ମା ଲୋ      ବିଷର୍ଣ୍ଣ ବଦନ
ଢାଳୁଛ କମ୍ପାଇ      ଲୋତକ ନୟନ ?
ଦେଖେଁ କମ୍ପା ଆଜ      ଜଳନ୍ତା ଅନଳ
ଜାଳୁଛ ତୋ ହୃଦ-      କମଳ-କେଶର ।
ସହିଅଛୁ କେତେ      ଦୁଃଖ ଶରବନ,
ଢଦେନ ନ ଦେଖେଁ ମୁଁ      ତୋ ମୁଖ ମଳନ ।

ବ୍ରହ୍ମଚର୍ଯ୍ୟ ବ୍ରତ ଜନ୍ମରେ ପାଳି
ପୁନ କନ୍ୟା ସ୍ନେହେ ମନ ପ୍ରାଣ ଢ଼ାଳି
ମୁଦ ଥିଲି ମଣି ଘୋର ଦୁଃଖେ ସୁଖ ।
ଅଜ୍ଞାତ ବିଷାଦ ଘୋଟିଛି ଏତା ମୁଖ,
ଦେଖୁନାହିଁ କନ୍ୟା ସ୍ନେହ ମଧୁରିମା
ଯା ଦେଖି ମାଆଙ୍କେ ନ ସରେ ଗରିମା ।
ଦୂରୁ ଦେଖି ମୋତେ ମୁଖେ ହସ ହସ,
ନିକଟେ ଥିଆ ତୁ କନ୍ୟା ବରସ ?
"ଦେଖି ନାହିଁ ଧନେ ବାନ୍ଧୁତ କୁମର
ମାତା ହୃଦପଟ ଖୋଲି ସ୍ତର ସ୍ତର ।"
ଜାଣିବୁକି ତହିଁ କେତେ ଦୁଃଖ ଛବି .
ରହିଛି ଚିତ୍ରିତ, ହୃଦ ଯାଏ ଦବି ।
ଭବୀ ସୁଖ ଭବ ସବୁ ଥିଲି ସନ୍ଧି
ବାଷା ନେଇଥିଲି ଗୁରୁ କରି ମନ୍ତ୍ରୀ ।
·ସଇଳି ଭାବନା· ·ଆସିଲା ଯାତନା
ସୁଖସ୍ମୃତ ମୋର ହଜାଏ ଚେତନା ।
ପୋଷିଥିଲି ଆଶା ହୃଦୟ ଭିତର
ପୁଅ ବହୂ ସଙ୍ଗ ଖେଳି ଧୂଳିଘର
ସୁଖେ କାଟିଦେବି ସମସ୍ତ ଜୀବନ;
ଘଟିଲା ଏବେ ତ ବିପରୀତ କର୍ମ ।

ଦେଖେ ନାହିଁ ଧନେ ଘୁଅନ୍ତୁ ନରମ,
ଦେଖିଲେ ସେ ମୋତେ ତା ହୃଦ ଗରମ ।
ସୁମୃନ-ମୋହନ- ମନ୍ତ୍ରେ ଉଚ୍ଚାଟନ,
ପିଲାଦିନ କଥା ଅଛି କି ସ୍ମରଣ ?
ଶିକାରୀ ସଙ୍କେତେ ଦେଖିଲେ ଶିକାର
ମାଡ଼ ବସେ ଶ୍ୱାନ ଯାଇଁ ଧାଡ଼ିକାର ।
ଫଳ ଅଛି ତାହା ମୋର ଭାଗ୍ୟ ବଶ !
ଯେବେଣେ ଶୁହେଁ ଶ୍ୱାନ ଧରଛି ତୁମା ପଛ ।
କାନ୍ଦେ ତେଣୁ , ଶିରେ ବରଷୁ ପୀୟୂଷ,
ମୁଁ ମରେ ପଛକେ ହୁଅ ଚିରଯୁଷ ।



# ଶୁକପକ୍ଷୀ ।

କାହିଁକି ରେ ଶୁକ ! କନକ ପିଞ୍ଜରେ
ବସି ଅଛୁ ମନ ମାରି ?
ନିରୀହ ସରଳ ନିର୍ଦ୍ଦୋଷୀ ପକ୍ଷୀ ତୁ
କେହୁଲା କିଏ ତୋ ଉଗାରି ?
ହେମେ ଊଷା ମୁଖେ ଯାହାର ସୁଗନ୍ଧରୁ
ଦଶେ ନବ ଲଣାପରେ;

ନନ୍ଦ ତାର କାନ୍ତ ଅଶ୍ରୁ ବିନ୍ଦୁ ବିନ୍ଦୁ
ନୟନୁଁ ତୋ ସଦା ଝରେ ।
ପ୍ରଫୁଲ୍ଲତା ଥିଲା ଜୀବନ-ସଙ୍ଗିନୀ
ଛାଡ଼ିଗଲା ସେ କି କାର ?
ନୀରବ ଭାଷାରେ ବିଷାଦ-ସଙ୍ଗୀତ
ଗାଉଛୁ ହୋଇ ଅଧୀର ।
କେଉଁ ଚୋର ତୋର ହୃଦୟ-କନ୍ଦରେ
ନିହିତ ଶାନ୍ତି-ରତନ
ନେଇ ଗଲାବେଳେ ନିସ୍ପୃହ ମାନସେ
ଅଛାଡ଼ ଘୋର କଷଣ ।
ପଡ଼େ ମନେ ନଦୀ- ସୁନିର୍ମଳ ଜଳ
କିବା ବନ ମଧୁଫଳ ?
କାହିଁକି ଶୋଚନା ଲଭିବୁ ସୁସ୍ୱାଦୁ
ଫଳ, ଦିବ୍ୟ ଗଙ୍ଗାଜଳ !
ଜାତି କି କୋମଳ- ପ୍ରାଣେ ପିତା ମାତା
ଭାଇ ବନ୍ଧୁଜନ ସ୍ମୃତି
ମରମେ ମରମେ ସ୍ତରେ ସ୍ତରେ ବହି
ଭସାଇ ନିଏ ତୋ ଧୃତି ?
କହ କହ ପକ୍ଷି ! କପଟ ନ ରଖି
ତୋହର ମନୋବେଦନା,

ପ୍ରକାଶିଲେ ଲଭୁ　　ହୁଏ ଦୁଃଖ ଭାର
ନାହିଁ କି ତୋର ଧାରଣା ?
ଜାଣିଲଣି ଶୁକ,　　ଯେଉଁ କୀଟ ତୋର
କାଟେ ହୃଦ-ପୁଷ୍ପଦଳ,
ଇଙ୍ଗିତରୁ ଫୁଟି　　ଉଠେ ବାହାରକୁ
ଭାବ ଗୁପ୍ତ ଅନ୍ତରର ।
ସ୍ୱାଧୀନତା ବିନା　　ଜଗତରେ ସାର
ନାହିଁ କିଛି ଅନ୍ୟ ଧନ,
ହରାଇ ସେ ରତ୍ନେ　　ପ୍ରିୟ ପକ୍ଷି ମୋର,
କରୁଣେ କରୁ କ୍ରନ୍ଦନ ।
ସୁନୀଳ ଗଗନେ　　ଅନିଲ ଲହରୀ-
ଦୋଳେ ଦୋଳି ମନ୍ଦେ ମନ୍ଦେ
ବଞ୍ଚି ସ୍ୱର-ବୀଚି　　ସଦେ କି ଆଉ ତୁ
ଖେଳିବୁ ମନ-ଆନନ୍ଦେ ?
କଉତୁକେ ଦେଇ　　ଖଣ୍ଡି ଉଡ଼ା ଆଉ
ଡାଳରୁ ଡାଳେ ବସିବୁ ?
ପ୍ରେମ-ଆଳାପେ କି　　ପ୍ରଣୟିନୀ ସଙ୍ଗେ
ବିଜନେ ଗୃହ ବାନ୍ଧିବୁ ?
ସାଙ୍ଗ ସୁଖ ଜନ-　　ସ୍ନେହ ସମ୍ଭାଷଣ
ଲଭିବୁ ଆଉ ତୁ କାହିଁ ?

ନିଶାର ସ୍ୱପନ ହେଲା ଏ ଜୀବନ
ଜାଗିଲେ ମିଳିବ ନାହିଁ ।
ରତନ-ଖଚିତ କନକ-ଶୃଙ୍ଖଳ-
ବଳୟ ପିନ୍ଧି କି କେହି
ମଣଇ ତାହାକୁ 'ଅଙ୍ଗ ଆଭରଣ ?
ଭୁଜଙ୍ଗ-ବନ୍ଧନ ସେହି ।
କ୍ରୀତଦାସ ଶିର ମଣ୍ଡିଲେ କିରୀଟେ
ଲଭିବ କି ସେ ସୁଖଶାନ୍ତି ?
ବନ୍ଦୀ ହୋଇ କେହି ରହିଲେ ପ୍ରାସାଦେ
ଘୁଚିବ କି ତାର ଅଶାନ୍ତି ?
ଯେଉଁ ଗୃହ ତୋର ହରିଛି ହୃଦୟ-
ନିଧି ଧିକ ତାକୁ ଶୁକ,
ଶାନ୍ତି ସୁଖେ ବସ, ଭାବିଲେ କି ହେବ
ବଢ଼ିବ ଦ୍ୱିଗୁଣେ ଦୁଃଖ ।
ହେଲେ ସେ ମନୁଷ୍ୟ ଯାଏ ଆସେ କିସ
ନ ବୁଝେ ସେ ପଶୁ-ମନ
ନ ରସେ ଆଲୀରେ ପିଶାଚ ହୃଦରେ
ପଶୁଠାରୁ ସେ ଅଧମ ।



# ଉଦ୍‌ବୋଧନ ।

---

ତେଜ ଶଯ୍ୟା ଉଠ     ଉତ୍କଳବାସି !
ଉତ୍କଳେ ପାହିବ     ନାହିଁକି ନିଶି,
ଉତ୍କଳର ପ୍ରାଚୀ     ଗଗନେ ରବି
ସଙ୍ଗେ ଘେନି ଗୁରୁ     ଲୋହିତ ଛବି
ଆଜ କି ଉଇଁବେ ନାହିଁ ?
କମଳା-ବିଳାସ     ଉତ୍କଳସରେ କି
କମଳ-କଳି ଫୁଟାଇ ?
ଦେଖ ଦେଶ ଥରେ     ମେଲି ନୟନ
ତୂଳୀ ତଳପରେ     କର ଶୟନ
ଲଭିଣ ଉତ୍ସାହ-     ଭାନୁ କିରଣ
ଚଉପାଶେ ଧୀରେ     ଧୀବର କେସର
ନାଚେ ଆଶା ପଙ୍କଜିନୀ
ହୃଦୟ-ସରସେ     ଚଞ୍ଚଳ ସଲିଳେ
ଚଳ ଚଳ ସୁହାସିନୀ ।
ଜାଗ ଜାଗ ଭାଇ     ଚଞ୍ଚଳ ଜାଗ
ତୁରିତ ଆଳସ୍ୟ     କର ହେ ତ୍ୟାଗ
ସ୍ୱପନ-ଜଡ଼ିମ     ମୁଖ ପଖାଳ
କର୍ତ୍ତବ୍ୟ-ସାଧନ     କର ଏକାଳ

ବାନ୍ଧ ସାହସ ନୂତନ
ରଖିଥାଅ ମନେ ମନ୍ତ୍ରର ସାଧନ
ଅବା ଶରୀର ପାତନ ।
ନିଃସ୍ୱାର୍ଥ ପୀଠରେ ସ୍ୱାର୍ଥ ସଙ୍କଳ
ଦେଇ ବଳ, ଶକ୍ତି ପାଇବୁଣି ବର
ମାଗ ଭାଇ ଯେତେ ନବୀନ ବଳ
ସରଜ ଉତ୍ସାହ- 'ସ୍ରୋତ ପ୍ରଖର'
ପରାଣୁଁ ନେବ ଭସାଇ
ହିଂସା ଦ୍ୱେଷ-ଆଦ୍ୟ ଶୈବାଳ-ମଞ୍ଜୁଷା
ଉନ୍ନତି-ଡ଼େଉ ଖେଳାଇ ।



## ବିଧବା ।

ଚନ୍ଦ୍ରାଲୋକେ ବସି ଏ କେଉଁ ଲଳନା
କରୁଛି ଭାବନା ? ନ ଯାଏ କଳନା ।
ପାଣ୍ଡୁରି ବରଣି ବଦନ ମଣ୍ଡଳ,
କିମ୍ପା ଅଚଞ୍ଚଳ ? ଗୃହାଣି ତରଳ ?
ଶୁଖି ଯାଇଅଛି ନୟନରୁ ନୀର
ଲିଭିଛି ଅଞ୍ଜନ କୁରଙ୍ଗୀନେତ୍ରୀର ।

ଫିଟୁଛି ହୃଦୁରୁ     କବାଟି ବନ୍ଧନ
ପୃଷ୍ଠେ ଲମ୍ବି କରେ     ଧରଣୀ ଚୁମ୍ବନ ।
ସିନ୍ଦୂରର ବିନ୍ଦୁ     ନାହିଁ କପୋଳରେ
କପୋଳ ଅଙ୍କିତ     ଶୈବଳମାଳରେ ।
ଦେଖୁ ନାହିଁ ଆଜ     ସୁବେଶ ଭୂଷଣ,
ଆପାଦ ମସ୍ତକ     ଧୂଳି ଆଭରଣ ।
ରେଖା ରେଖି ରେଖି     ଧରଣୀ ତଳରେ
ଚମ୍ପକ ଅଙ୍ଗୁଳି     ଅଲତା ବୋଳରେ
ଗୋଳ ହୋଇପରି     ଦିଶଇ ଆରକ୍ତ,
ଥୋପି ସ୍ପନ୍ଦେ ମନୋ-     ବେଦନା ସୂଚକ ।
ହଜି ଯାଇଛି କି     ଜୀବନ କୁଥୁଳି ?
ଭୁଲି ଭୁଲି ବାଳା     ହେଲାଣି ବାଉଳୀ ।
କେତେ ଯତ୍ନ କରି     ରଜନୀ ଦିବସ
ସାଇତି ଥିଲା ସେ     ପ୍ରାଣାମୃତ ରସ
ପ୍ରେମ ମଧୁସଙ୍ଗେ     କରି ଆସ୍ୱାଦନ
ବଞ୍ଚାଇ ଥିଲା ତା     ଅବଳା ଜୀବନ ।
ହଜିଛି କୁଥୁଳି     ତା ସଙ୍ଗେ ବଟିକା,
ଛାଡ଼ିଲାଣି ବାଳା     ପରାଣ ନାଟିକା ।
ସୁକୁମାରୀ ଶାଶୁ     ନଣନ୍ଦ ଗଞ୍ଜଣା
ସହିବ କେସନ     ଏ ଭବ ଭାବନା

ଦେଉଅଛି ତାର ମନରେ ପର୍ବାସ
ଜଳନ୍ତା ଅନଳେ ଏହି କି ବତାସ ?
ଦୁଃଖିନୀ ସେ ତାର ଶୁଭ କରମରେ
ନାହିଁ ସ୍ଥାନ ଯୋଡ଼ା ହିନ୍ଦୁ ସମାଜରେ ।
ପୋଡ଼ୁ ସେ ଧରମ ପୋଡ଼ୁ ସେ ସମାଜ
ନାହିଁ ଯହିଁ ହିତାହିତ ଅବା ଲାଜ ।
ବିପତ୍ନୀକ କେହି ବୟସେ ଅଶୀତି
ବିଭା କରେ କଣ୍ଠ- ତରୁଣୀ ଯୁବତୀ,
ନୁହେଁ ଏ କଳଙ୍କ ନୁହେଁ ଦୋଷାବହ,
କଳଙ୍କ ବାଳିକା- ବିଧବା ବିବାହ
ଯେ ସମାଜେ ଶାନ୍ତିସ୍ଥ ଏହି ଅବିଚାର
ତାକୁ ସବିନୟେ ଦୂରୁଁ ମୋ ଜୁହାର ।
ଯେ ସମାଜ ଗୃହେ ମାନି ଏ ଶାସନ
ରସାତଳେ ପଡ଼ି ଯାଉ ତସ ବନ୍ଧନ ।
ହତଭାଗିନୀ ଲୋ ନ ହୁଅ କାତର
ବିଫଳ ନୋହିବ ତୋ ଲୋତକଧାର ।
ଲୋତକଧାର ତୋ ନାକ-ମନ୍ଦାକିନୀ
ବୋହି ପବିତ୍ରିବ ଭାରତ ମେଦିନୀ,
ସମାଜ-ବକ୍ଷରୁ ସକଳ ଆବିଳ
ଧୋଇନେବ ପୁଣି ପବିତ୍ର ସଲିଳ

ସରସେ ଫୁଟିବ   ଶୋଭିବ ସାରସ,
ଉଠିବ ମନ୍ଦକ   ସୁବାସ ସରସ ।



## ସନ୍ଧ୍ୟା ।

---

ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା   ଆରତି ବାଜିଲା,
ସନ୍ଧ୍ୟା ହେଲା, ସନ୍ଧ୍ୟା ହେଲା   ଶଙ୍ଖ ଗରଜିଲା ।
ଗୋପାଳବାଳକ ଗାଏ   ପ୍ରଦୋଷ ଗୀତିକା
ମୁରଲୀ ବଜାନ୍ତି ସଙ୍ଗୀ   ବାଳକ ବାଳିକା ।
ଚରଣ୍ଡାଡ଼ୁଁ ଫେରିଲେଣି   ବିହଙ୍ଗପଙ୍କତି
ପ୍ରଦୋଷ ଆଗମ କୋଡ଼େ   ବାନ୍ଧବେ ବସତି ।
ପ୍ରୋଷିତ ବାନ୍ଧବ ବାଳା   ମନ ଛନ ଛନ
ସଞ୍ଜଯୋଗେ ଦେଖି ଦିନ-   ଯାମିନୀ ମିଳନ ।
ବୈଧବ୍ୟବଧୂର ସାକ୍ଷୀ   ଗଣିଲା ପ୍ରମୀଦ
ନିଦାରୁଣ ବିଧି ଯେଣୁ   ସାଧିଲା ବିବାଦ ।
ସନ୍ଧ୍ୟାଦୀପ ଜାଳ କେହ୍ନ   ପଲ୍ଲିବାସିନୀ
ତୁଳସୀ ଚଉରା ପାଶେ   କରଇ ଦଣ୍ଡିନୀ ।
ଧୂଳିଆ ବାବାଜି ତାର   ଦରିଦ୍ର ଫଖାଳ
ଗାଉଛି ସନ୍ଧ୍ୟାବନ୍ଦନା   ଦେଇ କରତାଳି ।

ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ଆରତି ବାଜିଲା,
ବାରବିଳାସିନୀ ବେଶ- ଭୂଷଣ ସାଜିଲା ।
ବାହାର ପଡ଼ିଲା ପଥେ ଧନିକ ଲମ୍ପଟ
ଚହଟ ଚିକ୍କଣ ଯୁବା, ଚଳନ ଚହଟ ।
ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ଶଙ୍ଖ ଗରଜିଲା,
ନିଶା-ବିମୋହିତ ନର ନିଦ ନ ଭାଜିଲା ॥



## ମାଗୁଣି ।

ଗୃହେଁ ନାହେ ପ୍ରଭୋ; ଅମୂଲ୍ୟ ରତନ
ଗୃହେଁ ନା ମୁଁ ମଣି କାଞ୍ଚନ,
ଦରକାର ନାହିଁ ରାଜସିଂହାସନେ
ସଦା ଦରିଦ୍ର ମୋ ଜୀବନ,
ଦରିଦ୍ରତା ହେଉ ଜୀବନସଖାଳି
ହୁଏ ପଛେ ଚିର ପଥର ଭିଖାରୀ
ଶ୍ରୀବିନୋଦପଦେ ଏତିକିମାଗୁଣି
ପାଇବି ବାଞ୍ଛିତ ରତନ ।
ଲୋଡୁନାହିଁ ମୁହିଁ କପଟ ମନ୍ତ୍ର
ଲୋଡୁନାହିଁ ମୁହିଁ ଛଳନା,

ଖୋଜୁନାହିଁ ମାନ ଅଭିମାନ ଅବା
ଜଗତେ ସୁଖ୍ୟାତ ରଚନା
ସତ୍ୟାସତ୍ୟ କଥା କହୁ ନା ରସନା
କେବେହେଁ ଦୁଶ୍ଚିନ୍ତା ନ ଜାଣୁ କାମନା,
ମାଗୁଛି ବାଳକ- ସରଳ- ଅନ୍ତର
ଆଉ କିଛି ମୋତେ ଦିଅ ନା ।

---

ପୋଡ଼ୁ ପୋଡ଼ୁ ପୋଡ଼ୁ ଏ ହୃଦୟ ॥
ନଦୀମଧ୍ୟେ ଗହନ ବନ ଶୁଷ୍କ ତୃଣ ସମାଚ୍ଛନ୍ନ
ମଧ୍ୟାହ୍ନରେ ଜଳି ଉଠି ଯେସନେ ଧୂମମୟ ।
କାଳି ବୋଲି ଯାଉ ବସି ଯେସନେ ଆବକସ ମସି
କୃପାଶଙ୍କା ଏତ ତୋର ପ୍ରଭୁ କୃପାମୟ !
ଶାନ୍ତିବାରି ନ ଲଭିଉ ଜଳୁ ହୃଦ ଦାଉ ଦାଉ
ରହୁ ଭସ୍ମ-ଅବଶେଷେ ଭଜୁ ଏ ଢଳୟ ।



# ପଥିକ ।

---

ଆରବର ବାଲୁକା ପ୍ରାନ୍ତରେ
ଗମଇ ପଥିକ ରଙ୍ଗେ ବନ୍ଧୁ ପରିଜନ ସଙ୍ଗେ
ଯାନେ ବସି, ନ ଜାଣଇ ଆତପ ପ୍ରଖର;
କିନ୍ତୁ କେଜାଣି କାହିଁକି ତାତଇ ଅନ୍ତର ।
ଭୋଜ୍ୟ ଦ୍ରବ୍ୟ ଧନ ଅଗଣନ
ଶକଟେ ଶକଟେ ପୂର୍ଣ୍ଣ ଉଟମାନେ ନାହିଁ ଖୁର୍ଣ୍ଣ
ତଥାପି ପଥିକ [illegible] ବଡ଼ ଅପ୍ରସନ୍ନ
ଧନମଣି ଖରକରେ ସୁମନ ଯେସନ ।
ରେ ପଥିକ ହୁଅନା ଅସ୍ଥିର
ଗୃହୀ ଗୃହୀ ଥରେ ଫେର ଜଳାଶୟ ନୟନ ମେଲ
ଏ ସଂସାର ମରୁଭୂମେ କେ କେତେ ଅଧୀର
ପଥିକେ ନ ଲଭ ସୁଖ ସୁଶାନ୍ତ-ସଲିଳ ।
ଚଳ ଚଳ ହୃଦେ ଧୈର୍ଯ୍ୟ ଧର
ଗଲେ ଆଜ କଷ୍ଟ ଦୂର ହେବ ତୋ ପିପାସା ଦୂର
ଜଳ ବିନା କଷ୍ଟ ଲୋଡ଼ା ନାହିଁରେ ତୋହର
ମରୁରେ ଯା ସଙ୍ଗେ ଆଜ କିଏ ହେବ ସର ?

ସମାପ୍ତ ।

---

Printed by Nityanand Sahoo A. Press, Cuttack